# ବୈଦେହୀଶ ବିଳାସର ପୁରାଣ ତତ୍ତ୍ୱ



ପ୍ରାଚୀନ ସାହିତ୍ୟ ପରିବେଷକ
• ଶ୍ରୀ ଶ୍ରୀଧର ପାତ୍ର •

# ବୈଦେହୀଶ ବିଳାସର
# ପୁରାଣ ତତ୍ତ୍ୱ

ପ୍ରାଚୀନ ସାହିତ୍ୟ ପରିବେଷକ

ଶ୍ରୀ ଶ୍ରୀଧର ପାଣ୍ଡ

ମୂଲ୍ୟ : ପଚିଶ ଟଙ୍କା ମାତ୍ର ]   ୧୯୯୩   [ ମୂଲ୍ୟ : ଟ ୨୫·୦୦

# ବୈଦେହୀଶ ବିଳାସର
## ପୁରାଣତତ୍ତ୍ୱ

ଲେଖକ ଓ ପ୍ରକାଶକ :
**ଶ୍ରୀ ଶ୍ରୀଧର ପାତ୍ର**
ବାଣପୁର, ଖୋର୍ଦ୍ଧା,
ପୁରୀ-୭୫୨୦୩୧
ପ୍ରକାଶକାଳ – ୧୯୯୩

ପ୍ରଚ୍ଛଦ :
**ବଳଦେବ ମହାରଥୀ**
ମୁଦ୍ରକ :
କ୍ରିଏସନ୍ ପ୍ରିଣ୍ଟିଂ ଇଣ୍ଡଷ୍ଟ୍ରିଜ୍
ଭୁବନେଶ୍ୱର-୨
ମୂଲ୍ୟ : ଟ ୨୫–୦୦

ପ୍ରାପ୍ତିସ୍ଥାନ :
**ଗାୟତ୍ରୀ**, କଳ୍ପନା ରୋଡ଼,
ଭୁବନେଶ୍ୱର-୧୪

**ଶାରଦା ଭବନ**
ବାଲୁବଜାର, କଟକ ୨

ରାଜ୍ୟ ସଂସ୍କୃତି ନିର୍ଦ୍ଦେଶାଳୟଙ୍କ ଆଂଶିକ ଆର୍ଥିକ ଅନୁଦାନରେ ପ୍ରକାଶିତ ।

**BAIDEHISH BILASHARA**
**PURANA TATWA**

Writer & Publisher :
**Sri Sridhar Patra**
Banpur, Khurda,
Puri-752031
1st Edition : 1993
Cover Design :
**B. Maharatha**
Printed at :
Creation Printing Industries
Bhubaneswar-2
Rupees Twenty five only

Available at :
**Gayatree,**
Kalpana Road,
Bhubaneswar-14

**Sarada Bhawan,**
Balubazar, Cuttack-2

Published with partly Financial assistance by the
Directorate of Culture, Govt. of Orissa.

# ଅଭିମତ

ବାଣପୁରର ପ୍ରସିଦ୍ଧ ଗାୟକ ଶ୍ରୀଯୁକ୍ତ ଶ୍ରୀଧର ପାତ୍ର ଗତ ପ୍ରାୟ ୩୦ ବର୍ଷ ଧରି ମୋର ସୁପରିଚିତ । ଆଜିକାଲିର ଅନେକ ଉଚ୍ଚଶିକ୍ଷିତ ଯେପରି ନିଜ ଯୋଗ୍ୟତା ସଂପର୍କରେ, ଉଚ୍ଚ ସ୍ତରରେ, ପ୍ରମାଣପତ୍ର ଯୋଗାଡ଼ କରି ପ୍ରକୃତରେ ଉଚ୍ଚଶିକ୍ଷିତ ଭବରେ ନିଜକୁ ଜାହିର୍ କରନ୍ତି ଏବଂ ବେଳେବେଳେ ଉଚ୍ଚ ଚାକିରିରେ ମଧ୍ୟ ପ୍ରବେଶ କରିଥାନ୍ତି, ଶ୍ରୀଯୁକ୍ତ ପାତ୍ର ମହାଶୟ ସେପରି କରିନାହାନ୍ତି । ଅଳ୍ପ ପାଠ ପଢ଼ିଥିଲେ ମଧ୍ୟ ପ୍ରାଚୀନ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କର ଗଭିର ପ୍ରବେଶ ରହିଅଛି । ଏପରିକି, ଓଡ଼ିଆରେ ଅତି ଉଚ୍ଚ ଡିଗ୍ରୀ ପାଇବାକୁ ସମର୍ଥ ହୋଇଥିବା ଅନେକ ଅଧ୍ୟାପକ ଯେଉଁ ଭଞ୍ଜ ସାହିତ୍ୟରେ ଓ ଯଦୁମଣି ସାହିତ୍ୟରେ ପ୍ରବେଶ କରିବା ଦରୂହ ବ୍ୟାପାର, ସେ ସ୍ଥଳରେ ଶ୍ରୀଯୁକ୍ତ ପାତ୍ର ମହାଶୟଙ୍କ ବିଚିତ୍ର ପ୍ରବେଶ ଦେଖି ମୁଁ ଥରେ ଥରେ ବିସ୍ମିତ ହୋଇଥାଏ ।

ବୈଦେହୀଶ ବିଳାସର ଅନେକ ପଦରେ ଯେଉଁସବୁ ପୁରାଣ ଚରିତ ରହିଛି, ଆଜିର ବହୁ ଉଚ୍ଚଶିକ୍ଷିତ ମଧ୍ୟ ସେ ସମ୍ପର୍କରେ କିଛି ଜାଣନ୍ତି ନାହିଁ କହିଲେ ଚଳେ । ଏହାର ପ୍ରଧାନ କାରଣ ହେଉଛି, ବିଶ୍ୱବିଦ୍ୟାଳୟ ସ୍ତରରେ ଓଡ଼ିଆ ଶିକ୍ଷା ପଦ୍ଧତିର ଗୁରୁତର ଭ୍ରମ ତଥା ଦୋଷ । ପୂଜ୍ୟପାଦ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ ବିନାୟକ ମିଶ୍ର, ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରି, ଅଧ୍ୟାପକ କରୁଣାକର କର, ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ, ଅଧ୍ୟାପକ କୁଞ୍ଜବିହାରୀ ତ୍ରିପାଠୀ, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ପ୍ରମୁଖ "ସଂସ୍କୃତ ପଣ୍ଡିତ ତଥା ଓଡ଼ିଆ ପଣ୍ଡିତ"ମାନଙ୍କର ଯୁଗ ଯେତେବେଳେ ବିଶ୍ୱବିଦ୍ୟାଳୟ ସ୍ତରରେ ଶେଷ ହୋଇ ଆସିଲା, ସେତେବେଳେ ଓଡ଼ିଆ ସାହିତ୍ୟରେ ଗଭୀର ପ୍ରବେଶ ଘଟିବାର ଦ୍ୱାର ଅବରୁଦ୍ଧ ହୋଇ ଆସିଲା । ଓଡ଼ିଆ ଭଷା କିଭଳି ନିମ୍ନଗାମୀ ହୋଇ ହୋଇ

ଦିନକୁ ଦିନ ଜ୍ଞାନ ହୀନତାର ନରକ କୁଣ୍ଡ ଆଡ଼କୁ ଗଲିଛି, ତାହା ବହୁ ଉଚ୍ଚଶିକ୍ଷିତଙ୍କ ହସ୍ତଲିଖିତ ୨୧୪ ଖଣ୍ଡ ଚିଠି ଦେଖିଲେ ଜାଣିହେବ । ଏ ସମ୍ପର୍କରେ ଅଧିକ ନକହି ନୀରବ ରହିବା ଶ୍ରେୟସ୍କର ମନେ ହେବ ।

ତଥାପି ଉତ୍କଳ ଭାରତୀଙ୍କ କୃପାରୁ ଏବେ ମଧ୍ୟ ଓଡ଼ିଆ ସାହିତ୍ୟର ସାଧକ ଅଛନ୍ତି, ଯେଉଁମାନଙ୍କର ଭାଷାଗତ ଦଖଲ ପ୍ରଶଂସନୀୟ । ସେହିମାନେ ଚେଷ୍ଟା କଲେ, ଗତ ପ୍ରାୟ ୩୦ ବର୍ଷ ମଧ୍ୟରେ ଘଟିଥିବା ଉଚ୍ଚାଙ୍ଗ ଓଡ଼ିଆ ଶିକ୍ଷାଭିତ୍ତିକ ଗ୍ଲାନିର ପ୍ରତିବିଧାନ କରଯାଇ ପାରିବ । ବିଶେଷ କରି, ପ୍ରାଚୀନ ଓଡ଼ିଆ ସାହିତ୍ୟର ଚର୍ଚ୍ଚା କ୍ଷେତ୍ରରେ ଉଚ୍ଚସ୍ତରୀୟ ଅବହେଳା ସତ୍ତ୍ୱେ ଶ୍ରୀଯୁକ୍ତ ପାତ୍ରଙ୍କ ପରି ଜ୍ଞାନପିପାସୁ ତଥା ସାହିତ୍ୟସେବୀମାନଙ୍କର ଅବଦାନ ନିଶ୍ଚିତ ଭାବରେ ପରିପୂରକ ଉପାଦାନ ରୂପେ ସହାୟକ ହେବ । ଏହି ଅବସରରେ ଶ୍ରୀଯୁକ୍ତ ପାତ୍ରଙ୍କ ପ୍ରତି ମୋର ଅଭିନନ୍ଦନ ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଆଶା କରୁଛି ଯେ ସେ ତାଙ୍କର ସଞ୍ଚିତ ଜ୍ଞାନ ପରିବେଷଣ କରିବା ପାଇଁ ଏହିଭଳି ପ୍ରଶଂସନୀୟ ଉଦ୍ୟମ କରିବାକୁ ପଛଘୁଞ୍ଚା ଦେବେନାହିଁ । ଦେବ ଦେବ ଜଗନ୍ନାଥ ତାଙ୍କୁ ଶକ୍ତି ଓ ପ୍ରେରଣା ପ୍ରଦାନ କରି ଏହି ସାରସ୍ୱତ ଶୁଭକର୍ମର ସଫଳତା ଦିଗରେ ଆଶୀର୍ବାଦ ଦେବେ ବୋଲି ମୋର ଆଶା ।

( ଇତି )

ଗୌରୀକୁମାର ବ୍ରହ୍ମା

ତା ୧ । ୧୨ । ୯୨

# ଅଭିମତ

ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟର ବିଦଗ୍ଧ ସମାଲୋଚକ ତଥା ପ୍ରବକ୍ତା ଶ୍ରୀଯୁକ୍ତ ଶ୍ରୀଧର ପାତ୍ରଙ୍କୁ ମୁଁ ବହୁଦିନରୁ ଜାଣିଛି । ସେ ମଧ୍ୟ-ଯୁଗୀୟ ଓଡ଼ିଆ କାବ୍ୟ; ବିଶେଷତଃ ଭଞ୍ଜ ସାହିତ୍ୟର ପ୍ରବକ୍ତା ଭାବରେ ଉତ୍କଳରେ ସର୍ବତ୍ର ସୁପରିଚିତ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ବୈଦେହୀଶ ବିଳାସ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ସୁଭଦ୍ରା ପରିଣୟ ଆଦି ଲୋକୋତ୍ତର କାବ୍ୟଗୁଡ଼ିକର ଅର୍ଥଅର୍ଥାନ୍ତର; ବିଶେଷତଃ ଅନ୍ତର୍ନିହିତ ପୌରାଣିକ ଆଖ୍ୟାୟିକା ତଥା ବୈଶିଷ୍ଟ୍ୟପୂର୍ଣ୍ଣ ଭାବରାଜିକୁ ବିଦଗ୍ଧ ଜନସମାଜରେ ଏପରି ମନୋଜ୍ଞ ଢଙ୍ଗରେ ପରିବେଷଣ କରନ୍ତି ଯେ, ଶ୍ରୋତାମାନେ ତାଙ୍କ ପ୍ରବଚନ ତଥା ବ୍ୟାଖ୍ୟାନ ଶୁଣି ମନ୍ତ୍ରମୁଗ୍ଧ ହୋଇ ଯାଆନ୍ତି ।

କଥାରେ ଅଛି – କାବ୍ୟକାର ଯାହା ଲେଖିଥାଆନ୍ତି, ତାହାକୁ ବ୍ୟାଖ୍ୟାକାରମାନେ ଜନସମାଜ ଆଗରେ ତା'ର ମନୋଜ୍ଞ ବ୍ୟାଖ୍ୟା କରି, କାବ୍ୟର ଚମତ୍କାରିତା ପ୍ରଦର୍ଶନରେ ସଫଳକାମ ହୋଇଥାଆନ୍ତି । ତା' ଫଳରେ ଜନମାନସରେ ମଧ୍ୟଯୁଗୀୟ କାବ୍ୟର ସଫଳ ରୂପାୟନ ହୋଇଥାଏ ।

ଶ୍ରୀଯୁକ୍ତ ପାତ୍ର ଗତ ତିରିଶବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି କାବ୍ୟା-ଲୋଚନାରେ ସମୟ ଅତିବାହିତ କରି ମଧ୍ୟଯୁଗୀୟ କାବ୍ୟଗୁଡ଼ିକୁ ଜନସମାଜରେ ପରିବେଷଣ କରୁଛନ୍ତି । ଚମତ୍କାର ବ୍ୟାଖ୍ୟା, ବୌଦ୍ଧିକ ଚିନ୍ତାଧାରା, ଶାସ୍ତ୍ରୀୟ ବିଗ୍ରହ ତଥା ସ୍ୱଭାବସହଜ ଭଙ୍ଗୀରେ କାବ୍ୟଗୁଡ଼ିକୁ ଶ୍ରୋତାମାନଙ୍କ ଆଗରେ ଶ୍ରୀଯୁକ୍ତ ପାତ୍ର ଯେପରି ଭାବରେ ଉପସ୍ଥାପିତ କରନ୍ତି, ତାହା ଅତ୍ୟନ୍ତ ହୃଦ୍ୟ, ମନୋଜ୍ଞ ତଥା ହୃଦୟଗ୍ରାହୀ । ତାଙ୍କପରି ଜଣେ ସୁବକ୍ତାଙ୍କ ଆଲୋଚନା ଥରେ ଶୁଣିଲେ, ବାରମ୍ବାର ତାଙ୍କ ଆଲୋଚନା ଶୁଣିବାକୁ ମନ ହୁଏ ।

କେଦାରନାଥ ଗବେଷଣା ପ୍ରତିଷ୍ଠାନ ସହିତ ଶ୍ରୀଯୁକ୍ତ ଶ୍ରୀଧର ପାତ୍ର ଗତ ତିନିବର୍ଷ ହେଲା ଅଙ୍ଗାଙ୍ଗୀ ଭବରେ ଜଡ଼ିତ । ସେ ଏହା ମଧ୍ୟରେ ଆମର ଶନିବାସରୀୟ ଆଲୋଚନାଚକ୍ରରେ ଭଞ୍ଜୀୟ କାବ୍ୟରୀତିର ତତ୍ତ୍ୱ ସମ୍ପର୍କରେ ପ୍ରବଚନ ଦେଇ, ଆମର ଆଗ୍ରହୀ ତଥା ବିଦଗ୍ଧ ଶ୍ରୋତା-ମାନଙ୍କୁ ମନ୍ତ୍ରମୁଗ୍ଧ କରିଛନ୍ତି । ତା' ବ୍ୟତୀତ ସେ ମଧ୍ୟ ଯଦୁମଣିଙ୍କ ସାହିତ୍ୟ ସମ୍ଭାରର ଜଣେ ସୁବିଜ୍ଞ ବ୍ୟାଖ୍ୟାକାର । ଉତ୍କଳଘଣ୍ଟ ତଥା ହାସ୍ୟରସକୋବିଦ ଯଦୁମଣି ମହାପାତ୍ରଙ୍କ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର'ର ବ୍ୟାଖ୍ୟା କରିବାରେ ଶ୍ରୀଯୁକ୍ତ ପାତ୍ରଙ୍କ ଦକ୍ଷତା ଅତ୍ୟନ୍ତ ପ୍ରଶଂସନୀୟ ।

ସୁଖର କଥା ଶ୍ରୀଯୁକ୍ତ ପାତ୍ର ମହୋଦୟଙ୍କ ଲେଖନୀରୁ 'ବୈଦେହୀଶ ବିଳାସର ପୁରାଣତତ୍ତ୍ୱ' ଶୀର୍ଷକ ପୁସ୍ତକଟିଏ ପ୍ରକାଶିତ ହେଉଛି । ପ୍ରକୃତରେ କହିବାକୁ ଗଲେ, ଆମ ସମାଲୋଚନା ସାହିତ୍ୟ ପାଇଁ ପ୍ରସ୍ତୁତ ପୁସ୍ତକଟି ହେବ ଖଣ୍ଡିଏ ଉପାଦେୟ ଆଲୋଚନାମୂଳକ ପୁସ୍ତକ । ଆମ ସାହିତ୍ୟ ସମାଲୋଚକମାନେ ଆଲୋଚନାମୂଳକ ସାହିତ୍ୟରେ ଯେଉଁ ଦିଗଟି ପ୍ରତି ଦୃଷ୍ଟି ଦେଇନାହାନ୍ତି, ଶ୍ରୀଯୁକ୍ତ ପାତ୍ର ତାହାରି ଆଲୋଚନା କରି, ପୁସ୍ତକଟିକୁ ଋଦ୍ଧିମନ୍ତ କରିଛନ୍ତି ।

ପ୍ରସ୍ତୁତ ପୁସ୍ତକରେ ଆଲୋଚକ ଶ୍ରୀଯୁକ୍ତ ପାତ୍ର କବିସମ୍ରାଟ୍ ଭଞ୍ଜବୀରବରଙ୍କ 'ବୈଦେହୀଶ ବିଳାସ'ର ପ୍ରଥମ ଛାନ୍ଦରୁ ଛବିଶ ଛାନ୍ଦ ମଧ୍ୟରେ ଥିବା ପୌରାଣିକ ତତ୍ତ୍ୱକୁ ଅର୍ଥ ଅର୍ଥାନ୍ତର ମାଧ୍ୟମରେ ବ୍ୟାଖ୍ୟା କରିଛନ୍ତି । ଏହା ଫଳରେ ସାଧାରଣ ପାଠକ ପାଠିକାମାନେ ଭଞ୍ଜ-ସାହିତ୍ୟର ନିଗୂଢ଼ ପୌରାଣିକ ତତ୍ତ୍ୱର ବ୍ୟାଖ୍ୟା ସମ୍ୟକ୍ ଭବରେ ଅବବୋଧ କରିପାରିବେ ।

ଯେଉଁ ପୌରାଣିକ ଆଖ୍ୟାୟିକାଗୁଡ଼ିକ ସାଧାରଣତଃ ଜନମାନସରେ ରସସଞ୍ଚାର କରଇ ପାରିବ, ଶ୍ରୀଯୁକ୍ତ ପାତ୍ର ତା'ରି ସମ୍ୟକ୍ ଆଲୋଚନା ପ୍ରସ୍ତୁତ ପୁସ୍ତକରେ କରିଛନ୍ତି । କେବଳ ସାଧାରଣ ଭବରେ ସେ

'ତତ୍ତ୍ୱ'ଗୁଡ଼ିକର ବ୍ୟାଖ୍ୟା କରିନାହାନ୍ତି, ନିଜର ସ୍ୱଭାବସହଜ ରୀତିରେ ସେଗୁଡ଼ିକୁ ମନୋଜ୍ଞ କରିବାରେ ବହୁ ପ୍ରୟାସ କରିଛନ୍ତି ।

ମୁଁ ଶ୍ରୀଯୁକ୍ତ ଶ୍ରୀଧର ପାତ୍ରଙ୍କ ଆଲୋଚନାମୂଳକ ପୁସ୍ତକଟି ପାଠ କରିବାର ସୁଯୋଗ ପାଇ ନିଜେ ଗୌରବାନ୍ୱିତ ହୋଇଛି ।

ତାଙ୍କ ଲେଖନୀରେ ପୁଷ୍ପଚନ୍ଦନ ବୃଷ୍ଟି ହେଉ, ଏହାହିଁ ପରମପିତା ଜଗଦୀଶ୍ୱରଙ୍କଠାରେ ମୋର ଏକାନ୍ତ କାମନା ।

ଆଶା କରେ, ସୁଧୀସମାଜରେ ଶ୍ରୀଯୁକ୍ତ ପାତ୍ରଙ୍କ ପୁସ୍ତକଟି ଆଦୃତ ହେବ ।

୨ । ୧୨ । ୯୨

**ନୀଳମଣି ମିଶ୍ର**

ସମ୍ପାଦକ,

କେଦାରନାଥ ଗବେଷଣା ପ୍ରତିଷ୍ଠାନ,

ଭୁବନେଶ୍ୱର ।



## ।। ନିଜକଥା ।।

ଆଜକୁ ପ୍ରାୟ ପଚାଶ ବର୍ଷ ତଳୁ ଅର୍ଥାତ୍ ମୋର ବାଲ୍ୟ ବୟସରୁ ମୁଁ ପ୍ରାଚୀନ ସାହିତ୍ୟ ପ୍ରତି ଆକୃଷ୍ଟ । ମୋର ଜନନୀ ପ୍ରାଚୀନ ପୁରାଣ ସାହିତ୍ୟ ପ୍ରତି ଆକୃଷ୍ଟ ଥିଲେ । ଅନେକ ପୁରାଣ ପଢ଼ିଥିଲେ ଏବଂ ମଝିରେ ମଝିରେ ମୋତେ ପୁରାଣ ଗଳ୍ପ କହୁଥିଲେ । କ୍ରମେ ପୁରାଣ ପଢ଼ିବା ପାଇଁ ମୋର ଆଗ୍ରହ ଜାତ ହେଲା । ତେଣୁ ଖଣ୍ଡିକ ପରେ ଖଣ୍ଡିଏ ପୁରାଣ ପଢ଼ି ଅନେକ ଚରିତ ମନେ ରଖିଲି । ଅଥଚ ଜୀବନ ନିର୍ବାହ କରିବା ପାଇଁ ମୁଁ ଛୋଟଧରଣର ସୁନାରୂପା ବ୍ୟବସାୟ କରୁଥିଲି । ମୋର ସୌଭାଗ୍ୟକୁ ବାଣପୁରର ପ୍ରତିଭାଶାଳୀ ସାହିତ୍ୟ ସାଧକ ଏକାନ୍ତ ଜାତୀୟବାଦୀ ତଥା ଆଶୁ କବି କବିରାଜ ଶ୍ରୀଯୁକ୍ତ ଗୋପୀନାଥ ସେନାପତିଙ୍କର କେବଳ ସାନିଧ୍ୟ ଲାଭ କରିନାହିଁ, ତାଙ୍କୁ ଗୁରୁରୂପେ ଗ୍ରହଣ କରି ଗାୟନ ଓ ପ୍ରାଚୀନ ସାହିତ୍ୟର ପରିବେଷଣ କ୍ଷେତ୍ରରେ ପଦାର୍ପଣ କଲି, ଏହା ପ୍ରାୟ ପଞ୍ଚତିରିଶ ବର୍ଷ ତଳର କଥା । ସାଂପ୍ରତିକ ଓଡ଼ିଶାରେ ପାଲାଗାୟକ-ମାନଙ୍କର ଜଣେ ପ୍ରବୀଣ ଓ ପ୍ରସିଦ୍ଧ ଉପଦେଷ୍ଟା ଭାବରେ ସମ୍ମାନିତ ଶ୍ରୀଯୁକ୍ତ ସେନାପତି ମହୋଦୟ ପଦେ ପଦେ ମତେ ଦିଗଦର୍ଶନ ଦେଉଥିଲେ । ତେଣୁ ପୁରାଣଗୁଡ଼ିକୁ ଏବଂ ଓଡ଼ିଶାର ବିଶିଷ୍ଟ କବିମାନଙ୍କର କାବ୍ୟମାନଙ୍କୁ ପଢ଼ିବା, ଗାଇବା ଏବଂ ଜନମନୋରଞ୍ଜକ ଭାବରେ ପରିବେଷଣ କରିବା ପାଇଁ ମୋର ଆଗ୍ରହ ବଢ଼ିବା ସଙ୍ଗେ ସଙ୍ଗେ ଦକ୍ଷତା ମଧ୍ୟ ବୃଦ୍ଧି ଲାଭ କଲା । ତାଙ୍କର ଉପଦେଶ ଓ ନିର୍ଦ୍ଦେଶ ହେତୁ ମୁଁ ବ୍ୟାଖ୍ୟାନ କୌଶଳର ସୂତ୍ର ଧରିପାରିଥିଲି । ଏବଂ ଆଜି ବିଂଶଶତାବ୍ଦୀର ଶେଷ ଦଶକରେ ଯେଉଁ ଜନପ୍ରିୟତା ଅର୍ଜନ କରିଅଛି ତାହା ମୂଳରେ ବହୁଦର୍ଶୀ ସାଧକ ଶ୍ରୀଯୁକ୍ତ ସେନାପତି ମହୋଦୟଙ୍କର ପ୍ରେରଣା ସ୍ମରଣୀୟ ରହିଅଛି ।

କ୍ରମେ ବାଣପୁରର ସୀମା ଅତିକ୍ରମ କରି ମୋର ପାଲ୍ଲ ପରିବେଷଣ ଅନ୍ୟ ଅଞ୍ଚଳମାନଙ୍କରେ ପରିଚିତ ହେଲା । କ୍ରମେ କ୍ରମେ ଦେଖିଲି, ରାମାୟଣ, ଶ୍ରୀମଦ୍ ଭାଗବତ, ଶ୍ରୀମଦ୍ ଭଗବଦ୍‌ଗୀତା ଇତ୍ୟାଦି ଇତ୍ୟାଦିର ଆଲୋଚନା ପାଇଁ ଅନୁଷ୍ଠିତ ହୋଇଥିବା ସଭାମାନଙ୍କରେ ପ୍ରବଚନ ଦେବାର ସୁଯୋଗ ମୁଁ ଲାଭକଲି । ପ୍ରତି ସଭାପାଇଁ କିଛି କିଛି ନୂତନ ତଥ୍ୟ ଚିନ୍ତନ ପାଇଁ ମଧ୍ୟ ପ୍ରବଳ ଚେଷ୍ଟା କଲି । ମୋର ସୌଭାଗ୍ୟ ଯେ ସେନାପତି ମହୋଦୟ ଭୁବନେଶ୍ୱରରେ ବାସ କରିବା ହେତୁ ଭୁବନେଶ୍ୱର ଓ କଟକ ସହିତ ଅଧିକ ସଂପର୍କ ସ୍ଥାପିତ ହେଲା । କ୍ରମେ କଟକର 'କଳିଙ୍ଗ ଭାରତୀ'-ଠାରୁ ଆରମ୍ଭ କରି ପୁରୀ ଜିଲ୍ଲା ଓ କଟକ ଜିଲ୍ଲାର ବହୁ ସାଂସ୍କୃତିକ ଓ ସାହିତ୍ୟିକ ଅନୁଷ୍ଠାନମାନଙ୍କରେ ପ୍ରବଚନ ଦେବାର ସୁଯୋଗ ଲାଭ କଲି । ଏହା ଫଳରେ କୋରାପୁଟଠାରୁ ମୟୂରଭଞ୍ଜ ପର୍ଯ୍ୟନ୍ତ ବିଭିନ୍ନ ଅଞ୍ଚଳରୁ ମୁଁ ପ୍ରବଚନ ଓ ଗାୟନ ପାଇଁ ଆମନ୍ତ୍ରଣମାନ ଲାଭକଲି ।

ସୌଭାଗ୍ୟକ୍ରମେ ଉତ୍କଳ ବାଚସ୍ପତି ପ୍ରଫେସର ଗୌରୀକୁମାର ବ୍ରହ୍ମା, କଟକ କଳିଙ୍ଗ ଭାରତୀର ସଭାପତି ପ୍ରଫେସର ରଜତ କୁମାର କର ତଥା ଡାକ୍ତର ଶ୍ରୀଯୁକ୍ତ ଶୈଳେଶ୍ୱର ନନ୍ଦ ପ୍ରମୁଖ ବିଶିଷ୍ଟ ସାଧକଙ୍କର ପ୍ରେରଣା ଲାଭ କରି ମୁଁ ଆଉଗୋଟିଏ ନୂତନ ଦିଗରେ ମୋର ଆନ୍ତରିକ ଉଦ୍ୟମ ଆରମ୍ଭ କଲି । ସେହି ଉଦ୍ୟମର ପରିଣତି ହେଉଛି ଏହି ପୁସ୍ତକ ।

ଉପେନ୍ଦ୍ର ଭଞ୍ଜଙ୍କର ପ୍ରସିଦ୍ଧ 'ରାମାୟଣ କାବ୍ୟ' ହେଉଛି 'ବୈଦେହୀଶ ବିଳାସ' । ତହିଁରେ ସ୍ଥାନେ ସ୍ଥାନେ ପୌରାଣିକ ଚରିତମାନ ସୂଚିତ ହୋଇଅଛି । କିନ୍ତୁ କ୍ରମେ ପୁରାଣ ପାଠର ପରିସର ସଂକୁଚିତ ହୋଇ-ଯାଉଛି, ଏବଂ ଯେଉଁମାନେ କାବ୍ୟ ପଢୁଛନ୍ତି, ସେମାନେ କବିଙ୍କର ଉଦ୍ଦେଶ୍ୟ ବୁଝିବା ପାଇଁ ସମର୍ଥ ହେଉନାହାନ୍ତି । ଏ ଦୃଷ୍ଟିରୁ ପୁରାଣରେ ଥିବା ବିଭିନ୍ନ ଚରିତ କିପରି ଭାବରେ ଭଞ୍ଜଙ୍କ ଲେଖନୀରେ ଫୁଟିଉଠିଛି, ସେହିକଥା ପାଠକମାନଙ୍କୁ ଜଣାଇବା ପାଇଁ ମୁଁ ପ୍ରଚେଷ୍ଟା କରିଅଛି । "ବୈଦେହୀଶ ବିଳାସ" କାବ୍ୟ ୫୨ ଛାନ୍ଦରେ ବିଭକ୍ତ । ମୁଁ ଏହାକୁ

ଦୁଇଭାଗରେ ବିଭକ୍ତ କରି ପ୍ରଥମ ଛବିଶି ଅଧ୍ୟାୟର ପୌରାଣିକ ଚରିତ୍ରମାନଙ୍କ ଉପରେ ଆଲୋକପାତ କରିଅଛି ।

ପାଣ୍ଡୁଲିପିର ପ୍ରେସ୍ କପିର ପ୍ରସ୍ତୁତିଠାରୁ ଆରମ୍ଭ କରି ପ୍ରୁଫ୍ ପାଠ ପର୍ଯ୍ୟନ୍ତ ବିଭିନ୍ନ ସ୍ତରର କାର୍ଯ୍ୟ ସଂପାଦନାରେ ମୁଁ ଯେଉଁମାନଙ୍କଠାରୁ ସାହାଯ୍ୟ ଲାଭ କରିଅଛି, ସେମାନେ ହେଲେ – ରାଜ୍ୟ ସଂସ୍କୃତି ବିଭାଗର ସଂପାଦକ ଶ୍ରୀଯୁକ୍ତ ଦୁଃଖିଶ୍ୟାମ ପଟ୍ଟନାୟକ, ସହସଂପାଦକ ଶ୍ରୀମାନ୍ ହରେକୃଷ୍ଣ ରଣା ପ୍ରମୁଖ ମୋର ଚିରସ୍ମରଣୀୟ । ପାଣ୍ଡୁଲିପି ପ୍ରସ୍ତୁତିରେ ଯୁବଗାୟକ ଶ୍ରୀ ଦିଲ୍ଲୀପକୁମାର ପଣ୍ଡା ଏବଂ ପ୍ରାଚୀନ ସାହିତ୍ୟପ୍ରେମୀ ଶ୍ରୀ ଅନ୍ତର୍ଯ୍ୟାମୀ ନାୟକ ମତେ ବିଶେଷ ସାହାଯ୍ୟ କରିଥିବାରୁ ମୁଁ ଉଭୟଙ୍କୁ ଧନ୍ୟବାଦ ଦେଉଅଛି । ଏହା ବ୍ୟତୀତ ମୋର ସମ୍ମାନଭାଜନ ଅନେକ ବନ୍ଧୁ ସହଯୋଗୀ ତଥା ଗୁଣଗ୍ରାହକ ସାହିତ୍ୟସ୍ରଷ୍ଟା ଓ ସାହିତ୍ୟସେବୀ ଏ ପ୍ରସଙ୍ଗରେ କେବଳ ସାଧୁବାଦ ନୁହେଁ କୃତଜ୍ଞତା ଲାଭ କରିବାର ଯୋଗ୍ୟ ଅଧିକାରୀ ।

ସର୍ବୋପରି ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଏହି ପୁସ୍ତକର ପ୍ରକାଶନ ନିମନ୍ତେ ଯତ୍‌କିଂଚିତ୍ ଆର୍ଥିକ ସାହାଯ୍ୟ କରିଥିବାରୁ ମୁଁ କର୍ତ୍ତୃପକ୍ଷଙ୍କଠାରେ ମୋର କୃତଜ୍ଞତା ଜ୍ଞାପନ କରୁଛି ।

ଶ୍ରୀ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ କୃପା ହେଲେ ଦ୍ଵିତୀୟ ଭାଗର ରଚନା ଓ ପ୍ରକାଶନ ସହଜରେ ସାଧିତ ହୋଇପାରିବ । ( ଇତି )

ଶ୍ରୀ ଶ୍ରୀଧର ପାତ୍ର

ବାଣପୁର

୨ । ୧୨ । ୯୨

# ସୂଚୀପତ୍ର


| ବିଷୟ | ପୃଷ୍ଠା |
|---|---|
| ୧—ବିଷ୍ଣୁ ଭଗବାନଙ୍କ ସମ୍ମୁଖରେ ଗରୁଡ଼ । | ୧ |
| ୨—ବିଗଜ ଅଖଣ୍ଡିତ ମଣ୍ଡଳେ ସିଂହ ଖବରେ । | ୬ |
| ୩—ବିହିତ ଯେହ୍ନୁ ଲୋହିତ ମୂର୍ତ୍ତି । | ୭ |
| ୪—ଦ୍ୱୀପ ପ୍ରସନ୍ନ କରତା ସେହି । | ୮ |
| ୫—ବିଦ୍ୟୁତ କେଶ ବଂଶରେ ଜାତ ସୁମାଳୀ ମାଳୀ ଯେ । | ୯ |
| ୬—ବାସ ନଗର ପାଶ ନଗର ନଗରତଳେ କରି ସତ୍ୱର । | ୧୧ |
| ୭—ବନ୍ଦୀ ବଳିର ଫେଡ଼ନେ ଯାର ଭରଷାକୃତ ରସାତଳଟ । | ୧୨ |
| ୮—କୋଟିଏ ସିଂହ ବଳ ବାଳିର ଧରଣେ ଇଛି ଯେ । | ୧୪ |
| ୯—ବାହୁଁ ସହସ୍ରଭୂଜେ ହୋଇଲୁ ବାଦୀ ଯେ । | ୧୬ |
| ୧୦- ବେଦମତୀରେ ମତି ବଳାଇ । | ୧୯ |
| ୧୧—ବୋଲି ମର୍କଟ ନିନ୍ଦି ନନ୍ଦୀରେ । | ୨୦ |
| ୧୨—ବିହିତ ଲୀଳା ଗେହିତ ଗେହିତ ମୂରତି । | ୨୧ |
| ୧୩—ବହ ଅମନ୍ଦ ମନ୍ଦର କୂର୍ମ ନମୋନମ । | ୨୨ |
| ୧୪—ବିପକ୍ଷେ ଦେବାଗି ବାଗି ପରଷିଲ ସୁଧା । | ୨୩ |
| ୧୫—ବଗହ ବର ବଗହବର ସୁ ପଣ୍ଡିତ । | ୨୩ |
| ୧୬—ବପୁବନ୍ତ ହରି ହରି ପ୍ରହ୍ଲାଦ ପୂଣ୍ୟକୁ । | ୨୪ |
| ୧୭—ବାମନ ମନମୋହନ ହୋଇ ଭୂଦାନରେ । | ୨୬ |
| ୧୮—ବିଭୁ ! ଭୃଗୁ ବଂଶପର ପରଶୁ ଧାରଣ । | ୨୮ |

| ବିଷୟ | ପୃଷ୍ଠା |
|---|---|
| ୧୯—ବାଣୀ ଯେ ଏପରି ଲଙ୍ଗଳ ଅଗ୍ରେ ଜାତ । | ୨୯ |
| ୨୦—ଚମ୍ପାବତୀ ରାଜ୍ୟ ବୃଷ୍ଟି ହୀନ ହେଲା କାହିଁକି । | ୩୩ |
| ୨୧—ଋଷ୍ୟଶୃଙ୍ଗ ଆସିଲେ ବର୍ଷା ହେବାର କାରଣ । | ୩୪ |
| ୨୨—ଶାନ୍ତାକନ୍ୟା କିଏ । | ୩୫ |
| ୨୩—ବିଜଳି ଉଜ୍ଜ୍ୱଳ ଶକ୍ତି ମନ୍ତ୍ରରେ । | ୩୫ |
| ୨୪—ବିଂଶଏକ ଦିନେ ଦୋଳି ଶଯନ । | ୩୬ |
| ୨୫—ବ୍ରତ ବିଧାନ ସମୟ ତହିଁ ହୋଇଲା । | ୩୭ |
| ୨୬—ବାଳ କିଶୋର ଭବକୁ ପ୍ରକାଶେ ତହିଁ । | ୩୮ |
| ୨୭—ବସାଇଲେ ଅଧଃସ୍ୱର୍ଗେ ହଟରେ ତ୍ରିଶଙ୍କୁ । | ୩୯ |
| ୨୮—ବାଡ଼ବେୟଠାରୁ ପାଲଟାଇ ମନୋହର । | ୪୧ |
| ୨୯—ବିଶାରଦ ସେ ସାମନ୍ତ । | ୪୪ |
| ୩୦—କୈବର୍ତ୍ତ ବିଜ୍ଞାନୀ ପ୍ରଦବାଚ୍ୟ କାହିଁକି । | ୪୫ |
| ୩୧—ବ୍ରହ୍ମାରେ ଧୌତ ଯେ ପଦ । | ୫୦ |
| ୩୨—ଏ ଭଗୀରଥୀ କିଏ ? ଗଙ୍ଗାକୁ ଆଣିଲେ କାହିଁକି ? | ୫୩ |
| ୩୩-ଯମ-ବୃକୋଦର ପଦବାଚ୍ୟ କାହିଁକି । | ୫୯ |
| ୩୪—ବିଷ୍ଣିରେ ଗଣ୍ଡ ଭେରଣ୍ଡେ । | ୬୦ |
| ୩୫—ବିଜୟୀ ଏ ତ୍ରିପୁରର-ତାତ୍ପର୍ଯ୍ୟ କଅଣ । | ୬୦ |
| ୩୬—ବିଧିଚ୍ଛେଦ ରଜ ମିତ୍ର ହସ୍ତରେ । | ୬୨ |
| ୩୭—ବହନ୍ତୁ ବହନ ସତାନନ୍ଦ ହେଲେ । | ୬୩ |
| ୩୮—ବିହଗ ଯୋଡ଼ାଏ-ବିହଙ୍ଗପାଣି ଏକାକି ପୀଡ଼ାଏ । | ୬୩ |
| ୩୯—ବଇଦର୍ଭି ଗ୍ରତୁରୀ ପ୍ରକାଶିତ । | ୬୪ |
| ୪୦—ବିନାଶ ତହିଁ ଉପତ୍ତି ମହିରୁ ନ ଘୋଷ ଯେ । | ୬୪ |

| ବିଷୟ | ପୃଷ୍ଠା |
|---|---|
| ୪୧—ବାଲ୍ମୀକି ଖଣ୍ଡ ବୃତ୍ତିକି ଆଶ୍ରେ କରିଥିଲେ । | ୬୫ |
| ୪୨—ବଳିଷ୍ଠ ଦାନବେ ପୂର୍ବଦେବ କହି । | ୬୬ |
| ୪୩—ବୃକାସୁର ବୃତ୍ତାନ୍ତ । | ୬୭ |
| ୪୪—ବାହିଲି ରଥ ସ୍ଥିରୀ ହୋଇ । | ୭୧ |
| ୪୫—ରାମଚନ୍ଦ୍ର ଚଉଦବର୍ଷ ବନକୁ ଯିବେ । | ୭୨ |
| ୪୬—ବିରେଚନ ନାରୀ ଛଦ୍ମେ ହୋଇ ହରି । | ୭୪ |
| ୪୭—ବିଷ ଭକ୍ଷଣରେ ଶିବ ବିରୋଧ କରିନଥିଲେ । | ୭୬ |
| ୪୮—କୈକେୟୀ ଶ୍ରୀରାମଙ୍କୁ ବଶୀଭୂତ କରିପାରିଲେ । | ୭୬ |
| ୪୯—ରବିବାରେ ଅଶ୍ୱତ୍‌ଥ ବୃକ୍ଷପରି କୈକେୟୀଙ୍କ ଯୋଗେ ଅଯୋଧ୍ୟା । | ୭୯ |
| ୫୦—ଗଣେଶ ଯମକୁ ମୂଷାକରି ରଖିଲେ କାହିଁକି । | ୮୧ |
| ୫୧—ଶନି କୋପଦୃଷ୍ଟିର ଫଳ । | ୮୩ |
| ୫୨—ଗଣେଶଙ୍କର ଗଜଗାଦି ପ୍ରାପ୍ତି । | ୮୪ |
| ୫୩—ପବନଙ୍କ ଜନ୍ମ ଓ ଦେବତ୍ୱ ପ୍ରାପ୍ତି । | ୮୫ |
| ୫୪—ତୁଳସୀକୁ ନାରାୟଣ ମସ୍ତକରେ ଧାରଣ କରିବା । | ୮୬ |
| ୫୫—ଚନ୍ଦ୍ରଙ୍କ ଉତ୍ପତ୍ତି । | ୮୭ |
| ୫୬—ଅନସୂୟାଙ୍କୁ ଅମ୍ଳାନ ଶାଢ଼ୀ ପ୍ରାପ୍ତି । | ୮୭ |
| ୫୭—ସୂର୍ପଣଖା ପଞ୍ଚବଟୀ ଆସିବାର କାରଣ । | ୮୮ |
| ୫୮—ମଧୁଦୈତ୍ୟ ବଧ ଓ ପୃଥିବୀର ଉତ୍ପତ୍ତି | ୯୩ |
| ୫୯—ଅଗସ୍ତିଙ୍କ ସମୁଦ୍ରକୁ ଚଳୁ କରିବା । | ୯୪ |
| ୬୦—ଚନ୍ଦ୍ରରେ କଳଙ୍କର କାରଣ । | ୯୫ |

# ବୈଦେହୀଶ ବିଳାସର

# ପୂରଣ ତତ୍ତ୍ୱ

## - ପ୍ରଥମ ଛାନ୍ଦ -

ପ୍ରଥମ ପଦ-

ବନ୍ଦଇ ଦୀନ ବାନ୍ଧବ ହରି ଯେ ତମଚନ୍ଦ୍ର ଖଣ୍ଡନକାରୀ
ସଦାକମଳାନନ୍ଦ ବସ୍ତ୍ରାରି ସ୍ୱଭାବେ ଛନ ଯେ ।
ବିଭୁ ଅନନ୍ତଅଙ୍କବହାରୀ କରପ୍ରତାପ ଯାର ସଞ୍ଚର
ନିଶାଚରଙ୍କ ଉଲ୍ଲାସ ହରି ପକେ ସୁମନ ଯେ ।
ବଇନତେୟ ଯାହା ଅଗ୍ରତେ ସ୍ଥିତ ଯେ । (୧)
ବଇକୁଣ୍ଠ ପଷକ ଲୋକ ତୋଷିତ ଯେ ।
ବିରାଜ ଅଖଣ୍ଡିତ ମଣ୍ଡଳେ ସିଂହ ଧ୍ୱଜରେ
କ୍ରୀଡ଼ିତ କାଳେ । (୨)
ଭବେ ତରଣି ହୋଇ ମଞ୍ଜୁଳେ ଗିରଭଦତ ଯେ ॥ ୧ ॥

(୧) ବଇନତେୟ ଯାହା ଅଗ୍ରତେ ସ୍ଥିତ ଯେ—

ବିଷ୍ଣୁ ଭଗବାନଙ୍କ ସମ୍ମୁଖରେ ବଇନତେୟ ବା ଗରୁଡ଼ ବିଦ୍ୟମାନ ହୋଇଛନ୍ତି କାହିଁକି ?

ଦକ୍ଷପ୍ରଜାପତିଙ୍କର ତେର କନ୍ୟାଙ୍କୁ କାଶ୍ୟପ ବିବାହ କରିଥିଲେ । ଦିତି, ଅଦିତି, ବିନତା, କଦ୍ରୁ, ମନ୍ ଇତ୍ୟାଦି । ତୃତୀୟ କନ୍ୟା ବିନତା କାଶ୍ୟପଙ୍କ ଔରସରେ ଅନ୍ତଃସତ୍ତ୍ୱା ହୋଇ ଯୋଡ଼ିଏ ଡ଼ିମ୍ବ ପ୍ରସବ କଲେ । ପ୍ରଥମ ଡ଼ିମ୍ବଟି ବହୁ ଦିନ ରଖିବା ପରେ ଫୁଟିବାର କୌଣସି ସମ୍ଭାବନା ନ

ଦେଖି ଫିଙ୍ଗି ଦେବାରେ ଦୁଇଖଣ୍ଡ ହୋଇଗଲା । ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇ ନ ଥିବାରୁ ଅରୁଣ ବର୍ଣ୍ଣର ସନ୍ତାନ ଜନ୍ମ ହେଲା । ସେ ସୂର୍ଯ୍ୟଙ୍କ ରଥରେ ସାରଥିରୂପେ ସ୍ଥାନ ପାଇଲା । ଦ୍ୱିତୀୟ ଡିମ୍ବଟି ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇ ଯେଉଁ ସନ୍ତାନଟି ଜନ୍ମ ହେଲା — ତା'ର ନାମ ଗରୁଡ଼ ।

ଏକଦା କଦ୍ରୁ ଓ ବିନତା ପ୍ରତ୍ୟୁଷରେ ସାଗର କୂଳରେ ପହଞ୍ଚିଲେ । ଉଭୟେ ଉଚ୍ଚୈଃଶ୍ରବା ଅଶ୍ୱର ଶୋଭାକୁ ଦେଖି ଆନନ୍ଦ ମନରେ ଫେରି ଆସୁଥାଆନ୍ତି । ଫେରିବା ସମୟରେ କଦ୍ରୁ ବିନତାଙ୍କୁ ପଚାରିଲେ, 'ଉଚ୍ଚୈଃଶ୍ରବା ଅଶ୍ୱ ଯେତେ ସୁନ୍ଦର ହେଲେ ମଧ୍ୟ ତା'ର ପୁଚ୍ଛଟି କିନ୍ତୁ କଳା । ଫଳରେ ତା' ସୌନ୍ଦର୍ଯ୍ୟରେ କାଳିମା ଲାଗିଗଲା ।' ବିନତା ଉତ୍ତର ଦେଲେ, 'ତୁ ତ ଠିକ୍ ଭାବେ ଦେଖିନାହୁଁ । ଅଶ୍ୱର ପୁଚ୍ଛ ଶୁକ୍ଳ ବର୍ଣ୍ଣ ।' ଏହି ସାମାନ୍ୟ କଥାବାର୍ତ୍ତାରୁ ଉଭୟଙ୍କ ମଧ୍ୟରେ ଯୁକ୍ତିତର୍କ ଚଢ଼ିବାକୁ ଲାଗିଲା । ଶେଷରେ ସିଦ୍ଧାନ୍ତ କଲେ କାଲି ପ୍ରତ୍ୟୁଷରୁ ପୁନର୍ବାର ଆସି ଅଶ୍ୱକୁ ଦେଖିନେବେ । ଅଶ୍ୱର ପୁଚ୍ଛ ଯଦି ଶୁକ୍ଳ ଥାଏ କଦ୍ରୁ ବିନତାଙ୍କର ଦାସୀ ହୋଇ ରହିବେ । ଯଦି କୃଷ୍ଣବର୍ଣ୍ଣ ଥାଏ ତେବେ ବିନତା କଦ୍ରୁଙ୍କର ଦାସୀ ହୋଇ ରହିବେ । ଏପରି ବାଜି ରଖି ଉଭୟେ ଘରକୁ ଫେରିଲେ ।

ସନ୍ଧ୍ୟା ସମୟରେ କଦ୍ରୁ ତାଙ୍କର ସମସ୍ତ ପୁତ୍ରମାନଙ୍କୁ ବସାଇ ବିନତାଙ୍କ ସହିତ ଘଟିଥିବା ତର୍କ ଓ ବାଜିଥିବା କଥା ବୟାନ କଲେ । ନାଗରାଜ ବାସୁକି କହିଲେ, 'ଉଚ୍ଚୈଃଶ୍ରବା ଅଶ୍ୱ ସଂପୂର୍ଣ୍ଣ ଧଳା । ତୁମେ ମିଛଟାରେ ଜିଦ କଲ । ବର୍ତ୍ତମାନ ତୁମେ ଦାସୀ ହେବାକୁ ବାଧ୍ୟ ହେବ ।' କଦ୍ରୁଙ୍କର ମୁହଁ ଶୁଖିଗଲା । ଆଖିରୁ ଦୁଇଧାର ଲୁହ ଗଡ଼ିଗଲା । ମାଆଙ୍କର ଦୁଃଖରେ ବ୍ୟଥିତ ହୋଇ କାଳୀନାଗ କହିଲେ, 'ମୁଁ ମାଆଙ୍କର କଥାକୁ ସତ୍ୟ ପ୍ରମାଣିତ କରିବି । ମାଆ ଦାସୀ ହୋଇ ରହିବା ପରିବର୍ତ୍ତେ ବଡ଼ମାଆ ଦାସୀ ହୋଇ ରହିବେ ।' ବାସୁକି ଏଥିରେ ସମ୍ମତି ଦେଲେ-ନାହିଁ । ପରଦିନ ପ୍ରତ୍ୟୁଷରୁ କାଳୀନାଗ ଉଚ୍ଚୈଃଶ୍ରବା ପୁଚ୍ଛରେ ଗୁଡ଼େଇ ହୋଇଗଲେ । କଦ୍ରୁ ଓ ବିନତା ପୂର୍ବ ପ୍ରସ୍ତାବ ପ୍ରକାରେ ଯେତେବେଳେ

ସାଗର କୂଳକୁ ଯାଆନ୍ତି ;ଦେଖିଲେ ପୁଚ୍ଛଟି ପ୍ରକୃତରେ କୃଷ୍ଣ କଳା । ସତ୍ୟରକ୍ଷା କରି ସେହିଦିନଠାରୁ ବଡ଼ ଭଉଣୀ ବିନତା ସାନ ଭଉଣୀ କଦ୍ରୁଙ୍କର ଦାସୀ ହୋଇ ରହିଥାଆନ୍ତି ।

ଗରୁଡ କ୍ରମେ ପାରିବାର ହେଲେ । ବିନତାଙ୍କ ସାଥିରେ ଯାତାୟାତ କରୁଥାଆନ୍ତି । ଗରୁଡ଼ଙ୍କୁ ଦେଖି କେହି କେହି ଦାସୀପୁତ୍ର ବୋଲି କହନ୍ତି । ଏଥିରେ ଗରୁଡ ଅପମାନ ବୋଧକରି ଦିନେ ମାଆଙ୍କୁ ଏହାର କାରଣ ପଚାରିଲେ । ତୁମେ ବଡ଼ ହୋଇ ସାନମାଆଙ୍କର ଦାସୀ ହୋଇଛ କାହିଁକି ? ବିନତା ଗୋଟି ଗୋଟି କରି ପୂର୍ବଘଟଣା ଶୁଣାଇ ଦେଲେ । ଗରୁଡ଼ ଶୁଣିବାମାତ୍ରେ ପ୍ରତିହିଂସାରେ ଜର୍ଜରିତ ହୋଇପଡ଼ିଲେ ଏବଂ ପୃଥିବୀରୁ ନାଗକୁଳକୁ ଧ୍ୱଂସ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ । ସେହି ମୁହୂର୍ତ୍ତରୁ ସର୍ପକୁଳକୁ ଧ୍ୱଂସ କରିବା ପାଇଁ ଅଭିଯାନ ଆରମ୍ଭ କଲେ । ପ୍ରତିଦିନ ଅସଂଖ୍ୟ ନାଗଙ୍କୁ ମାରି ଭକ୍ଷଣ କଲେ । ନାଗରାଜ ବାସୁକି କୁଳରକ୍ଷା ପାଇଁ ବ୍ୟସ୍ତ ହୋଇ ଗରୁଡ଼ଙ୍କର ଶରଣାପନ୍ନ ହୋଇ ସ୍ତୁତିପାଠ କରନ୍ତେ ଗରୁଡ଼ ଶାନ୍ତ ହେଲେ । ନାଗରାଜ ବାସୁକି ପ୍ରତିଶ୍ରୁତି ଦେଲେ -- ଗରୁଡ଼ଙ୍କ ଭୋଜନ ପାଇଁ ସେ ପ୍ରତିଦିନ ଗୋଟିଏ ଲେଖାଏଁ ନାଗ ବିନ୍ଧ୍ୟପର୍ବତର ବଧଶିଳା ନିକଟକୁ ପଠାଇବେ । ଏଥରେ ଗରୁଡ଼ ସମ୍ମତ ଦେଲେ ।

ସେହିଦିନଠାରୁ ପାଳିକରି ନାଗମାନେ ଗରୁଡ଼ଙ୍କର ଭୋଜନ ପାଇଁ ଆସନ୍ତି । ଦିନକର ଘଟଣା; ମଣିଚୂଡର ପାଳି ପଡ଼ିଥାଏ । ତାର ମା' କାନ୍ଦି କାନ୍ଦି ତା ପଛରେ ଦୌଡ଼ିଥାଏ । ମଣିଚୂଡ଼ ବଧଶୀଳା ଉପରେ ବସି ଫେରିଯିବା ପାଇଁ ତା ମା'କୁ ବୁଝାଇବାରେ ଲଗିଥାଏ । ମାତ୍ର ନାଗୁଣୀ ଫେରି ନଯାଇ ଆକୁଳରେ କାନ୍ଦୁଥାଏ । ଏତିକିବେଳେ ବିଦ୍ୟାଧର ନଗରୀର ରାଜପୁତ୍ର ଜୀମୂତବାହନ ନାଗୁଣୀର କ୍ରନ୍ଦନଧ୍ୱନୀ ଶୁଣି ସେଠାରେ ପହଞ୍ଚିଲେ ଏବଂ ବିଳାପର କାରଣ ପଚାରିଲେ । ନାଗମାତା ସମସ୍ତ ବିବରଣ ବୁଝାଇ ଦେଇ କହିଲେ, 'ହେ ବାପୁ ! ଆଜି ମୋର ପାଳି ପଡ଼ି

ଥିବାରୁ ମୋର ଏକମାତ୍ର ସନ୍ତାନ ମଣିଚୂଡ଼ ଗରୁଡ଼ର ଭୋଜନ ହେବାକୁ ଯାଉଛି । ସେ ମୋର ମନା ମାନୁନାହିଁ । ସେଥିପାଇଁ ମୁଁ କାନ୍ଦୁଛି । ଏହା କହି ସେ ଆଗନ୍ତୁକଙ୍କର ପରିଚୟ ମାଗିଲେ ।

ଜୀମୂତବାହନ ନିଜର ପରିଚୟ ଦେଇ ଉତ୍ତର ଦେଲେ, 'ମାଆ ! ମୁଁ ମଧ୍ୟ ତୁମର ଗୋଟିଏ ପୁଅ ତେଣୁ ଏହାକୁ ନେଇ ଘରକୁ ଯାଅ । ତୁମ ନିମନ୍ତେ ମୁଁ ଆଜି ପକ୍ଷିରାଜ ଗରୁଡ଼ଙ୍କର ଖାଦ୍ୟ ହେବି । କିଛି ଚିନ୍ତା କର ନାହିଁ ।'

ନାଗକନ୍ୟା ଉତ୍ତର ଦେଲା, 'ମଣିଚୂଡ଼ ଯେପରି ମୋର ପୁଅ, ତୁ ମଧ୍ୟ ତୋ ବାପ ମାଆଙ୍କର ଗୋଟିଏ ପୁଅ । ମୋ ପୁଅ ପାଇଁ ମୁଁ ଯେପରି ବିକଳ ହେଉଛି ତୋ ମାଆ ମଧ୍ୟ ତୋ ବିଚ୍ଛେଦରେ ବିକଳ ହେବେ । ତେଣୁ ମୁଁ ଏହା କରଇ ଦେବିନାହିଁ ।'

ଏତିକିବେଳେ ଗରୁଡ଼ଙ୍କର ଆସିବା ସୂଚନା ପାଇ ଜୀମୂତବାହନ କହିଲେ, 'ମାଆ ! ତୁମେ ବର୍ତ୍ତମାନ ପୁଅକୁ ନେଇ ସ୍ନାନ ଶୌଚ ହୋଇ ଆସ । ତାପରେ ମଣିଚୂଡ଼ ତାଙ୍କର ଭୋଜ୍ୟ ହେବ ।' ଜୀମୂତବାହନଙ୍କ କଥାରେ ବିଶ୍ୱାସ କରି ମାଆ ପୁଅ ସ୍ନାନ ଶୌଚ ପାଇଁ ଝରଣାକୁ ଚାଲିଗଲେ । ସେମାନେ ଯିବାମାତ୍ରେ ଜୀମୂତବାହନ ଗୋଟିଏ ଚଦର ଢାଙ୍କି ହୋଇ ବଧଶିଳା ଉପରେ ଶୋଇ ରହିଲେ । ଶୂନ୍ୟରୁ ପକ୍ଷୀରାଜ ଗରୁଡ କ୍ଷୁଧାତୁର ହୋଇ ବଧଶିଳା ଉପରେ ଶାୟିତ ଜୀମୂତବାହନଙ୍କ ଶରୀର ଉପରେ ଲମ୍ଫଦେଇ ନଖ ଓ ଚଞ୍ଚୁଘାତ କଲେ । ତାଙ୍କର ସର୍ବାଙ୍ଗରୁ ରକ୍ତ ଧାର ଧାର ହୋଇ ବୋହି ଯାଉଥିଲେ ମଧ୍ୟ ସେ ନିଶ୍ଚଳ ହୋଇ ପଡ଼ି ରହିଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ, 'ଯେତେ ନାଗଙ୍କୁ ମୁଁ ଭକ୍ଷଣ କରିଛି କେହି ହେଲେ ମୋର ନଖ ଓ ଚଞ୍ଚୁଘାତ ସମ୍ଭାଳି ପାରି ନାହାନ୍ତି । ହେ ମହାତ୍ମନ୍, ଆପଣ କିଏ ? ମୋଦ୍ୱାରା ଆଘାତପ୍ରାପ୍ତ ହୋଇ ମଧ୍ୟ ନିଶ୍ଚଳ ହୋଇ ରହିଛନ୍ତି ।' ଜୀମୂତବାହନ କୌଣସି ଉତ୍ତର ନଦେଇ

କହିଲେ, 'ମୋ ଦେହରେ ମାଂସ ଓ ରକ୍ତ ପରିପୂର୍ଣ୍ଣ ହୋଇ ରହିଛି । ଆପଣ ଖାଆନ୍ତୁ । ଅଟକିଗଲେ କାହିଁକି ?' ଗରୁଡ଼ ଚମକି ଉଠିଲେ ଏବଂ ତାଙ୍କର ପରିଚୟ ମାଗିଲେ । ପରିଚୟ ଜାଣିବା ପରେ ଗରୁଡ଼ ଦୁଃଖିତ ହୋଇ ଅମୃତ ଆଣି ଜୀମୂତବାହନଙ୍କୁ ବଞ୍ଚାଇବା ପାଇଁ ସ୍ୱର୍ଗପୁର ଯାତ୍ରା କଲେ । ଇନ୍ଦ୍ରଙ୍କୁ ଅମୃତ ମାଗିବାରୁ ଇନ୍ଦ୍ର ମନା କଲେ । ତେଣୁ ସେ ବଳାତ୍କାର କରି ଅମୃତ ଆଣିବା ନିମନ୍ତେ ଅଗ୍ରସର ହେଲେ । ଏଥିପାଇଁ ଦେବତାମାନଙ୍କ ସହିତ ଗରୁଡ଼ଙ୍କର ଚାଲିଲା ତୁମୁଳ ସଂଗ୍ରାମ । ଦେବତାମାନେ ଗରୁଡ଼ଙ୍କ ଦ୍ୱାରା ପରାସ୍ତ ହୋଇ ନାରାୟଣଙ୍କୁ ସ୍ମରଣ କଲେ ଏବଂ ନାରାୟଣ ଗରୁଡ଼ଙ୍କ ସହିତ ଯୁଦ୍ଧ କଲେ ।

ସ୍ୱୟଂ ନାରାୟଣ ଗରୁଡ଼ଙ୍କ ସହ ସମକକ୍ଷ ହୋଇ ନପାରିବାରୁ ବିଶ୍ୱରୂପ ଧାରଣ କରି ଗରୁଡ଼ଙ୍କର ପୃଷ୍ଠାରୋହଣ କଲେ । ସେଥିରେ ଗରୁଡ଼ ପରାସ୍ତ ହୋଇ ନାରାୟଣଙ୍କୁ ସ୍ତୁତି କଲେ । ନାରାୟଣ ସନ୍ତୁଷ୍ଟ ହୋଇ ଗରୁଡ଼ଙ୍କୁ ବର ଦେଲେ ଏବଂ ବାହନରୂପେ ନିଜ ପାଖରେ ରଖିଲେ । ଜୀମୂତବାହନଙ୍କୁ ଗରୁଡ଼ ବଞ୍ଚାଇ ନ ପାରି ତାଙ୍କ ହତ୍ୟାପାତକ ଭୟରେ ତାଙ୍କୁ ପ୍ରାର୍ଥନା କଲେ । ଜୀମୂତବାହନ କହିଲେ, 'ହେ ପକ୍ଷିରାଜ ! ଆପଣ ଯଦି ଆଜିଠାରୁ ନାଗ ଭକ୍ଷଣ ତ୍ୟାଗ କରନ୍ତି ମୋ ହତ୍ୟାପାପ ଆପଣଙ୍କୁ ଲାଗିବ ନାହିଁ ।'

ପକ୍ଷିରାଜ ଗରୁଡ଼ କହିଲେ, 'ମୋର ଖାଦ୍ୟ ନାଗ । ସେମାନଙ୍କୁ ଦେଖିଲେ ମୋଠାରେ ଲାଳସା ଜାଗ୍ରତ ହୁଏ । ତେଣୁ ଯଦି ଭୁଲରେ ଭକ୍ଷଣ କରିଦିଏ ?' ଜୀମୂତବାହନ କହିଲେ, 'ଯେଉଁ ମଣିଚୂଡ଼ଙ୍କୁ ରକ୍ଷା କରିବା ନିମନ୍ତେ ମୋ ଦେହ ତ୍ୟାଗ କରୁଛି, ସେହି ମଣିଚୂଡ଼ ତୁମ ମସ୍ତକରେ ରହିବେ । ତୁମେ ଯେତେବେଳେ ନାଗ ଭକ୍ଷଣ ପାଇଁ ତତ୍ପର ହେବ, ସେ ତୁମକୁ ଚେତାଇ ଦେବେ ।'

ତେଣୁ ସେହିଦିନଠାରୁ ଗରୁଡ଼ଙ୍କ ମସ୍ତକରେ ମଣିଚୂଡ଼ ସଦାସର୍ବଦା ରହିଛନ୍ତି ଏବଂ ନାରାୟଣ ଜୀମୂତବାହନଙ୍କ ଉଦାର ହୃଦୟକୁ ଦେଖି ଷଡଦାନୀଙ୍କ ମଧ୍ୟରେ ସ୍ଥାନ ଦେଇଛନ୍ତି ।

— ଗରୁଡ଼ ପୁରାଣ

## (୨) ବସୁଜ ଅଖଣ୍ଡିତ ମଣ୍ଡଳ ସିଂହ ଭୁବନେ କ୍ରୀଡ଼ନ୍ତ ନାମେ ।

କଶ୍ୟପଙ୍କ ଔରସରୁ ଦିତି କନ୍ୟାଙ୍କ ଗର୍ଭରୁ ହିରଣାକ୍ଷ ଓ ହିରଣ୍ୟକଶିପୁ ନାମରେ ଦୁଇଭାଇ ଜନ୍ମଗ୍ରହଣ କଲେ । ହିରଣାକ୍ଷ ନାରାୟଣଙ୍କ ବରାହ ଅବତାରରେ ବିନାଶ ହେଲା । ଭାତୃହନ୍ତାର ପ୍ରତିଶୋଧ ନେବାକୁ ହିରଣ୍ୟକଶିପୁ କଠୋର ତପସ୍ୟା କରି ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ ହେଲା –ଦିନରେ ମରିବ ନାହିଁ, ରାତିରେ ମରିବ ନାହିଁ, ଜଗତର ଚର, ଅଚର, ଅନଳ, ଜଳ, ବାୟୁଜନିତ କୌଣସି ପ୍ରାଣୀଦ୍ୱାରା ମରିବ ନାହିଁ । କୌଣସି ଅସ୍ତ୍ର, ଶସ୍ତ୍ର, ମନ୍ତ୍ର ଯନ୍ତ୍ରଦ୍ୱାରା ମରିବ ନାହିଁ । ତଳେ, ଉପରେ ମରିବ ନାହିଁ । ଏପରି କଠୋର ବର ପାଇ ପୃଥିବୀରୁ ନାରାୟଣ ନାମ ଲୋପ କରିବାକୁ ନିର୍ଦ୍ଦେଶ ଦେଇ ଅନୀତି ଅତ୍ୟାଚାର କଲା । ଭଗବାନ ଦେବତାଙ୍କ ପ୍ରାର୍ଥନା ଜାଣି ନିଜ କଳାରୁ ଏକ ଅଂଶ ପ୍ରହ୍ଲାଦ ରୂପରେ ହିରଣ୍ୟକଶିପୁଙ୍କ ପତ୍ନୀ କୟାଧୁଙ୍କ ଗର୍ଭରେ ଉତ୍ପନ୍ନ କରାଇଲେ । ପ୍ରହ୍ଲାଦ ଜନ୍ମରୁ ବିଷ୍ଣୁ ଭକ୍ତ ହୋଇ ସଦାସର୍ବଦା ନାରାୟଣ ନାମ ସ୍ମରଣ କଲେ । ଏଣୁ ହିରଣ୍ୟକଶିପୁ ବିରକ୍ତ ହୋଇ ପ୍ରହ୍ଲାଦକୁ ମାରିବାକୁ ଆଦେଶ ଦେଲା । ବହୁ ପ୍ରକାର ଚେଷ୍ଟାକରି ମଧ୍ୟ ମାରି ନପାରି ଦିନେ ସନ୍ଧ୍ୟା ସମୟରେ ହିରଣ୍ୟକଶିପୁ ନିଜ ପୁତ୍ର ପ୍ରହ୍ଲାଦକୁ ପଚାରିଲା, 'ତୋର ନାରାୟଣ କେଉଁଠି ଅଛନ୍ତି ?' ପ୍ରହ୍ଲାଦ ଉତ୍ତର ଦେଲା, 'ଭଗବାନ ସର୍ବବ୍ୟାପୀ ।' "କେ ଷ୍ଟ ପାଷାଣ ତରୁ ତୃଣ । ସକଳ ଘଟେ ନାରାୟଣ ।।"–ଭାଗବତ ପ୍ରମାଣ । ହିରଣ୍ୟକଶିପୁ କହିଲା, 'ତେବେ ଏ ଶୃଙ୍ଖଳ କାଠ ଖମ୍ବରେ ତୋର ଭଗବାନଙ୍କୁ ଦେଖାଇ ଦେଇ ପାରିବୁ ? ନଚେତ୍ ନାରାୟଣ ନାମ ଛାଡ଼ିବୁ ।' ପ୍ରହ୍ଲାଦ ସ୍ୱୀକାର କଲେ । ହିରଣ୍ୟକଶିପୁ ଗଦାଦ୍ୱାରା ଖମ୍ବଟି ଭାଙ୍ଗିଦେବାରେ ଭଗବାନ ଭକ୍ତ ପ୍ରହ୍ଲାଦଙ୍କୁ ରକ୍ଷାକରି ଦୁଷ୍ଟ ହିରଣ୍ୟକଶିପୁକୁ ମାରିବା ପାଇଁ ଅର୍ଦ୍ଧକେଶରୀ, ଅର୍ଦ୍ଧନର ଶରୀର ଧାରଣ କରି ଖମ୍ବ ମଧ୍ୟରୁ ଆବିର୍ଭାବ ହୋଇ ନିଜର ଜାନୁ ଉପରେ ହିରଣ୍ୟକଶିପୁକୁ ରଖି ନଖଦ୍ୱାରା ଚିରି ମାରିଦେଲେ । ଏ ହେଲା ନାରାୟଣଙ୍କ ଚତୁର୍ଥ ଅବତାର ସିଂହ ।

– ନରକେଶରୀ ପୁରାଣ

ଦ୍ୱିତୀୟ ପଦ –

ବହୁତ ଯେହ୍ନ ଲୋହ୍ନଡ ମୂର୍ତ୍ତି (୧) ଶ୍ରୁତି-ରଞ୍ଜନ
କାରକ ଅଟ

ହଂସ ହୋଇଣ ଯାହା ପ୍ରଶସ୍ତି ଅଛି ପ୍ରବର୍ତ୍ତି ଯେ ।
ବରାହ ରୂପ ଯାହାର ପୁଣି ଦ୍ୱିଜ ଚନ୍ଦ୍ର ଯା ଦର୍ଶନ ଗୁଣି
ଆମ୍ଭ ଭୂପର ସଂସାରେ ଭଣି କି ଶୁଭ କୀର୍ତ୍ତି ଯେ ।
ବୁଧ ଜନକ-ଶିର ଭୂଷଣ ଯେହ୍ନ ଯେ ।
ବନସ୍ଥଳୁ ଯେ ଆନ ବାଣୀ ନ କହ୍ନ ଯେ ।
ବଳି ଯାହାକୁ ସର୍ବଦା ନାହିଁ ଦ୍ୱୀପ ପ୍ରସନ୍ନ
କରନ୍ତା ଯେହ୍ନ (୨)
ପୁନତ ଧର୍ମ ସ୍ୱରୂପ ଗ୍ରାହୀକ ସ୍ତୁତ ତହିଁ ଯେ ॥ ୨ ॥

(୧) ବହୁତ ଯେହ୍ନ ଲୋହ୍ନଡ ମୂର୍ତ୍ତି –

ପୂର୍ବକାଳରେ ଭଗବାନ ବ୍ରହ୍ମାଙ୍କର ବେଦପୋଥି ଶଙ୍ଖାସୁର ନାମକ ଗୋଟିଏ ଦୈତ୍ୟ ଚୋରାଇ ନେଇ ସମୁଦ୍ର ମଧ୍ୟରେ ଲୁଚି ରହିଲା । ବେଦ ଚୋରି ହେବାରୁ ପିତାମହ ବ୍ରହ୍ମା ଚିନ୍ତିତ ହୋଇ ନାରାୟଣଙ୍କୁ ସ୍ମରଣ କରନ୍ତେ ଭଗବାନ କଶ୍ୟପଙ୍କ କମଣ୍ଡଳୁ ମଧ୍ୟରେ ଗୋଟିଏ ମୀନ ରୂପରେ ଜନ୍ମ ଗ୍ରହଣ କଲେ । କଶ୍ୟପ ତାଙ୍କୁ ନେଇ ପୁଷ୍କରିଣୀରେ ରଖିଲେ । ସେ ପୁଷ୍କରିଣୀ ପୂର୍ଣ୍ଣ ହୋଇଗଲା । ସମୁଦ୍ର ମଧ୍ୟରେ ନେଇ ଛାଡ଼ିଦେବାରୁ ରୋହିମାଛ ରୂପ ଧାରଣ କରି ଭଗବାନ ସାଗର ମଧ୍ୟରୁ ଶଙ୍ଖାସୁରକୁ ଖୋଜି ବାହାର କଲେ ଏବଂ ଚନ୍ଦ୍ରହାସ ଖଡ୍‌ଗଦ୍ୱାରା ମାରି ବେଦ ଉଦ୍ଧାର କରି ବ୍ରହ୍ମାଙ୍କୁ ପ୍ରଦାନ କଲେ ।

– ମତ୍ସ୍ୟ ପୁରାଣ

(୨) ଦ୍ୱୀପ ପ୍ରସନ୍ନ କରତା ମେନ୍ଦ୍ର .......................

ବ୍ରାହ୍ମଣ କୁମାର ଜୟ ବିଜୟ ଉଚଶିକ୍ଷା ଲାଭ କରିସାରିବା ପରେ ଗୋଟିଏ ଯଜ୍ଞକୁ ନିମନ୍ତ୍ରିତ ହୋଇ ଯାଇ ବହୁ ଧନ ଦକ୍ଷିଣା ପାଇଲେ । ଧନ କାହାକୁ ଦେବାପାଇଁ ପ୍ରଶ୍ନ ଉଠନ୍ତେ ବଡଭାଇ କହିଲେ, 'ଗୁରୁଙ୍କୁ ଦେବା ।' କିନ୍ତୁ ସାନଭାଇ ବିଜୟ ପିତା ମାତାଙ୍କୁ ଦେବା ପାଇଁ କହିଲେ । ଉଭୟଙ୍କ ମଧ୍ୟରେ କନ୍ଦଳ ସୃଷ୍ଟି ହେଲା । ବଡଭାଇ ଜୟ ବିଜୟକୁ ଅଭିଶାପ ଦେଲେ—'ତୁ ମୂର୍ଖ ଆଚରଣ କଲୁ ଗୁରୁଙ୍କୁ ଅବମାନନା ହେଲା । ଏଣୁ ତୁ ଗଜମୂର୍ଖ ହୋଇ ଜନ୍ମଗ୍ରହଣ କର ।' ବିଜୟ ଏକଥା ଶୁଣି ବଡଭାଇଙ୍କୁ ଅଭିଶାପ ଦେଲା— ତୁମେ ସଙ୍କୀର୍ଣ୍ଣମନା ହୋଇ ମୋତେ ଅଭିଶାପ ଦେଲ, ତୁମେ ମଧ୍ୟ କୁମ୍ଭୀର ରୂପରେ ଜନ୍ମ ଗ୍ରହଣ କର ।' ଉଭୟେ ଗଜ କୁମ୍ଭୀର ହୋଇ ଜନ୍ମ ଗ୍ରହଣ କଲେ । କେତେକାଳ ଅତିବାହିତ ହେବା ପରେ ଗଜ ଗଣ୍ଡକୀରେ ପାଣି ପିଇବାକୁ ଯିବାରେ ନକ୍ର ରୂପରେ ଥିବା ଜୟ ପୂର୍ବ ରାଗକୁ ଧରି ଗଜକୁ ଆକ୍ରମଣ କଲା । କୁମ୍ଭୀର କବଳରୁ ଉଦ୍ଧାର ନ ପାଇ ଗଜରୂପୀ ଜୟ ନାରାୟଣଙ୍କୁ ଡାକନ୍ତେ ଭଗବାନ ଚକ୍ରଦ୍ୱାରା ନକ୍ରକୁ ମାରି ଗଜକୁ ଉଦ୍ଧାର କରିଥିଲେ ।

ଭାଗବତରେ ଅଛି — ଟେକି ଧରିଲା ପଦ୍ମନାଳ ।
ଡାକିଲା ରଖ ଆଦିମୂଳ ।।'

—ଭାଗବତ

ପଞ୍ଚମପଦ—

ବିଦ୍ୟୁତକେଶ ବଂଶରେ ଜାତ ସୁମାଳୀ ମାଳୀ ଯେ
ମାଲ୍ୟବନ୍ତ (୧)
ସ୍ୱର୍ଗ ଲୁଣ୍ଠନେ ଅସ୍ତ୍ର ଅସ୍ତ୍ରତ ଧ୍ୱଆନ କଲେ ଯେ ।
ବଧୂ-ସମରେ କେଶାଙ୍କ ଜ୍ୱଳିତ ବଧି ସମରେ ହେଲେ
ଆଗତ
ସେ ଆରେଷ୍ଟ୍ରତ ଅସ୍ତ୍ର-ଅସ୍ତ୍ରତ ଗଦାବ୍ଜ ଧରେ ଯେ ।

ବଜାଇଣ ଶଙ୍ଖାର ଜରତଣ ଘାତ ଯେ ।
ବଧ କଲେ ଶଙ୍ଖାର ଦ୍ୱିତୀୟ ଭ୍ରାତ ଯେ ।
ବଡ଼ଭୀ ଲଭି ପାତାଳେ ଲୁଚ ଲଙ୍କା ବଡ଼ଭିପୁରକୁ ମୁଞ୍ଚ
ଲଙ୍କା ଯେ ଦଣ୍ଡପାଣିରେ ରଚ ଭୟ ଯେମନ୍ତ ଯେ ॥୫॥

(୧) ବିଦ୍ୟୁତ୍ କେଶ ବଂଶରେ ଜାତ ସୁମାଳୀ ମଳୀ ଯେ
ମାଲ୍ୟବନ୍ତ,
ସ୍ୱର୍ଗ ଲୁଣ୍ଠନେ ଅହ-ଅହ୍ନତ ଧ୍ୱଆଜ କର ଯେ—

ପୂର୍ବକାଳରେ ପିତାମହ ବ୍ରହ୍ମା ନିଜ ଅଂଗରୁ ଦୁଇଟି ପୁରୁଷ ଜଗତ ସର୍ଜନା ପାଇଁ ଜନ୍ମଦେଇ କହିଲେ, 'ତୁମେ ମୋ ହେତୁ ଜାତ ହୋଇଛ । ତେଣୁ ତୁମ ନାମ ହେତି ଓ ପ୍ରହେତି ରଖାଗଲା । ତୁମେ ସଂସାର ସର୍ଜନା କର ।' ଏ କଥା ଶୁଣି ହେତି ଅମାନ୍ୟ କରିବାରୁ ପିତାମହ ତାକୁ ରାକ୍ଷସ ହୁଅ ବୋଲି କହି ଅଭିଶାପ ଦେଲେ । ପ୍ରହେତି ଯୋଗ ସାଧନରେ ଲିପ୍ତ ରହିଲେ । ସେହି ହେତିଦୈତ୍ୟ କାଳକ୍ରମେ ବିବାହକରି ଗୋଟିଏ ପୁତ୍ର ପ୍ରାପ୍ତହେଲା । ତାର କେଶଗୁଚ୍ଛ ବିଜୁଳି ପରି ଚମକୁ ଥିବାରୁ ତାର ନାମ ହେଲା ବିଦ୍ୟୁତ୍‌କେଶ । ସେ ବିଦ୍ୟୁତ୍ କେଶ ବିବାହ ହେଲା । ତାର ପ୍ରେୟସୀ ପ୍ରତି ଏତେ ଅନୁରାଗ ଜନ୍ମିଲା ଯେ ଦିବା ରାତି ତାର ପ୍ରଣୟରେ ମଗ୍ନ ରହିଲା । ଏହିପରି କିଛିଦିନ ଅତିବାହିତ ହେବା ପରେ ତାର ପତ୍ନୀ ଅନ୍ତଃସତ୍ତ୍ୱା ହେଲା । ହିମାଳୟ ତଟ ଦେଶରେ ପୁଅଟିଏ ଜନ୍ମହେଲା ।' ପ୍ରଣୟବିଭୋର ବିଦ୍ୟୁତ୍‌କେଶ ଏବଂ ତାର ପତ୍ନୀ ପୁଅଟିକୁ ସେଠାରେ ପକାଇଦେଇ ପୁଣି ପ୍ରଣୟ ଲାଳସାରେ ଅନ୍ୟତ୍ର ଚାଲିଗଲେ । ପୁଅଟି ସେଠାରେ ପଡ଼ି ଚିତ୍କାର କରୁଛି । ଏତିକିବେଳେ ଶିବ ପାର୍ବତୀ ଉଦ୍ୟାନ ଭ୍ରମଣ କରୁଥିଲେ । ପାର୍ବତୀ ଶିଶୁଟିର କ୍ରନ୍ଦନ ଧ୍ୱନୀ ଶୁଣି ନିକଟକୁଯାଇ ପୁଅଟିକୁ କୋଳକୁ ନେଲେ ଏବଂ ତାର ଉତ୍ତମ କେଶଗୁଚ୍ଛ ଦେଖି ତାର ନାମ ରଖିଲେ ସୁକେଶ ଏବଂ ତାକୁ ନିଜର ଧର୍ମପୁତ୍ର ରୂପେ ଗ୍ରହଣ କଲେ । ଶିବ ଏ କଥା ଜାଣି ଏ ରାକ୍ଷସ ପୁତ୍ରକୁ କେଉଁଠି ରଖିବ

ପରଗନ୍ତେ ପାର୍ବତୀ ଅଳିକଲେ, 'ଆପଣ ମୋ ପୁଅ ପାଇଁ ଗୋଟିଏ ସୁନ୍ଦର ନଗର ନିର୍ମାଣ କରନ୍ତୁ ।' ପ୍ରଭୁ ସଦାଶିବ ବିଶ୍ୱକର୍ମାଙ୍କୁ ସ୍ମରଣ କଲେ । ବିଶ୍ୱକର୍ମା ଆବିର୍ଭାବ ହୁଅନ୍ତେ ଶିବ କହିଲେ, 'ହେ ଶିଳ୍ପୀ ! ମୋ ଆଦେଶ ମାନି ସମୁଦ୍ର ମଧ୍ୟରେ ପବନ ଏବଂ ଗରୁଡ ଯୁଦ୍ଧ ସମୟରୁ ପଡ଼ିଥିବ । ବିନ୍ଧ୍ୟ ପର୍ବତର ସୁବର୍ଣ୍ଣ ଶୃଙ୍ଗରେ ତୁମେ ସୁନ୍ଦର ନଗର ନିର୍ମାଣ କରଇ ଦିଅ ।' ବିଶ୍ୱକର୍ମା ତତ୍କ୍ଷଣାତ୍ ପ୍ରଭୁଙ୍କ ଆଦେଶ ମାନି ନଗର ନିର୍ମାଣ କଲେ । ପାର୍ବତୀ ଅତ୍ୟନ୍ତ ଆନନ୍ଦ ହୋଇ ସେ ନଗର ବିନ୍ଧ୍ୟର ଶୃଙ୍ଗ ହୋଇଥିବାରୁ ତାର ନାମ ଲଙ୍କା ରଖିଲେ । ସେହି ସୁକେଶୀ ବାଳକକୁ କହିଲେ, 'ରେ କୁମାର ! ତୁ ଯୁବକ ହୋଇଯାଅ ।' ମା'ଙ୍କ ଆଦେଶରେ ସେ ଯୁବକ ହୋଇଗଲା । ପୁଷ୍ପମାଳା ନାମକ ଏକ ଗାନ୍ଧର୍ବୀ ସହ ବିବାହ କରଇ ଲଙ୍କାରେ ରଖିଲେ । କାଳକ୍ରମେ ତାର ତିନି ପୁତ୍ର ଜନ୍ମ ହେଲେ । ମାଳୀ, ସୁମାଳୀ ଓ ମାଲ୍ୟବନ୍ତ । ଏହି ଦୈତ୍ୟତ୍ରୟ ମହାପରାକ୍ରମଶାଳୀ ହୋଇ ସ୍ୱର୍ଗପୁରରେ ଯୁଦ୍ଧ କରିବାକୁ ଲାଗିଲେ । ଦେବରାଜ ଇନ୍ଦ୍ର ଭଗବାନଙ୍କ ଶରଣ ନିଅନ୍ତେ ଭଗବାନ ଗରୁଡ଼ ପୃଷ୍ଠରେ ବସି ଶଙ୍ଖ ବଜାଇ ଚକ୍ର ପ୍ରହାର କରି ମାରନ୍ତେ ତୃତୀୟ ଭାଇ ମାଲ୍ୟବନ୍ତ ମୃତ୍ୟୁ ଲାଭ କଲା । ଭୟରେ ମାଳୀ ଓ ସୁମାଳୀ ପ୍ରାଣ ଘେନି ଯୁଦ୍ଧ କ୍ଷେତ୍ରରୁ ଚାଲିଗଲେ । ନାରାୟଣ ତାଙ୍କର ପଶ୍ଚାଧାବନ କରୁଥିବାରୁ ଲଙ୍କାପୁର ଛାଡ଼ି ସକୁଟୁମ୍ବେ ପାତାଳରେ ଲୁଚି ରହିଲେ । ଲଙ୍କାପୁର ଶୂନ୍ୟ ହୋଇ ରହିଲା ।

—ଜଗମୋହନ ରାମାୟଣ

**ଷଷ୍ଠ ପଦ –**

**ବାହାର ପୁଣ୍ୟଜନେ ହୋଇଲେ ବାହାର ପୁଣ୍ୟ**
**ଜନେ ବାହୁଲେ**
**ରଞ୍ଜନ ପୁଣ୍ୟଜନ କୁବେରେ ସେ ଦୀପ୍ତିମାନ ଯେ ।**
**ବାସ ନଗର ପାଶ ନଗର ନଗର ଉଲେ କର ସତ୍ୱର**
**ଜଗତ ତାତ-ସୁତ କୁମର କଲେ ସେସ୍ଥାନ ଯେ । (୧)**

ବହୁ ସମୟ ଅନ୍ତେ ଏହି ପ୍ରକାରେ ଯେ ।
ବାର୍ତ୍ତା ପାଇ ସୁମାଳୀ ଏମାନ ଗୃହେ ଯେ ।
ବିଶ୍ରବା ଋଷିର ସନ୍ନିଧିକି ନେଲା ଦୁହିତା ରସ ନିଧିକି
ଶୋଭିରେ କରେ ସେ ଧିକ ଧିକ ନାରୀମାତରେ ଯେ ।।୭।।

(୧) ବାସ ନଗର ପାଶ ନଗର ନଗରତଳେ କରି ସଭିର
କଗତଭାତ-ସୁତ କୁମର କଲେ ସେ ସ୍ଥାନ ଯେ—

ପୁରାଣ ପ୍ରମାଣ ଅଛି ଶିବ ବଦାନ୍ୟତାବଶତଃ ସର୍ବସ୍ୱ ଦାନଦେଇ ନିଃସ୍ୱ ଅବସ୍ଥାରେ ଉଲଗ୍ନ ହୋଇ ବୁଲିଲେ । ଶିବଙ୍କ ମିତ୍ର କୁବେର ମିତ୍ରଙ୍କର ଦୁରବସ୍ଥା ଦେଖି ନିଜ ନଗରୀ କୈଳାସ ନାମକ ଶୃଙ୍ଗରେ ରଖାଇ ଦେଲେ । ଶିବଗଣଙ୍କ ବିଘାତରେ ଯକ୍ଷଗଣ ସର୍ବଦା ଉତ୍ପୀଡ଼ିତ ହେଲେ । କୁବେର ପ୍ରଜାମାନଙ୍କ ଅବସ୍ଥା ଦେଖି ଶିବଙ୍କୁ ଏ ବିଷୟ ସୌଜନ୍ୟତାବଶତଃ ନ ଜଣାଇ ନିଜେ ହିମାଳୟ ଛାଡ଼ିବାକୁ ଉଦ୍ୟତ ହୁଅନ୍ତେ ଭଗବାନ ଶଙ୍କର କହିଲେ, 'ମିତ୍ର ! ତୁମର ଉଦାର ହୃଦୟ ଯୋଗୁଁ ମୁଁ ତୁମଠାରେ ଚିର ଋଣୀ । ତୁମେ ଏଠାରେ ରୁହ ମୁଁ ମୋର ପ୍ରଜାବର୍ଗଙ୍କୁ ନେଇ ଚାଲିଯାଉଛି ।' କୁବେର କହିଲେ, 'ମିତ୍ର, ଦାନ ଜିନିଷ ପୁନରାୟ ଗ୍ରହଣ କଲେ ନର୍କଗାମୀ ହେବାକୁ ପଡ଼ିବ । ଏଣୁ ମୁଁ ଆପଣଙ୍କୁ ଦେଇଥିବା କୈଳାସ ଫେରାଇ ନେଇ ପାରିବି ନାହିଁ । ମୁଁ ପଛେ ଏ ସ୍ଥାନ ଛାଡ଼ି ଚାଲିଯିବି ।' ଶିବ କୁବେରଙ୍କ ଅନ୍ତର କଥା ଜାଣି ଖାଲି ପଡ଼ିଥିବା ଲଙ୍କାରେ ତାଙ୍କୁ ରଖାଇ ଦେଲେ । କୁବେର ସୈନ୍ୟଦ୍ୱାରା ଲଙ୍କାରେ ଥିବା ଅବଶିଷ୍ଟ ରାକ୍ଷସଙ୍କୁ ପରାଜିତ କଲେ ଏବଂ କୁବେର ସେଠାରେ ରାଜତ୍ୱ କଲେ ।

କୁବେର ଲଙ୍କାରେ ରାଜତ୍ୱ କରିବା ପରେ ଉକ୍ତ ଲଙ୍କାର ନିକଟସ୍ଥ ସ୍ୱର୍ଣ୍ଣ ନାମକ ପର୍ବତରେ କୁବେରଙ୍କ ପିତା ବିଶ୍ରବା କୁଟୀର ରଚନା କରି ତପସ୍ୟାରେ ଲିପ୍ତ ରହିଲେ । କିଛିଦିନ ପରେ ମାଳୀ ସୁମାଳୀ ଏ ସମ୍ବାଦ ଦୂତମାନଙ୍କଠାରୁ ପାଇ କିପରି ନିଜ ରାଜ୍ୟ ନିଜ ଦଖଲକୁ ଆସିବ ଚିନ୍ତାକରି ସୁମାଳୀ କନ୍ୟା ନିକଷାକୁ ଘେନି ଋଷି ବିଶ୍ରବାଙ୍କ ନିକଟକୁ ଆସିଲେ ।

ନିକଷା ନିଜର ମାୟାବିଦ୍ୟା ବଳରେ ଋଷିଙ୍କ ମନକୁ ହରଣ କରି ବିବାହ କଲେ । ମାଳୀ ଏବଂ ସୁମାଳୀ କନ୍ୟାଦାନ କରି ଯୌତୁକରେ ଉକ୍ତ ଲଙ୍କା ନଗରୀ ପ୍ରଦାନ କଲୁ ବୋଲି ସ୍ୱୀକୃତି ଦେଲେ ।

—ଜଗମୋହନ ରମାୟଣ
—ବାଲ୍ମୀକି ରମାୟଣ

ବନ୍ଦୀ ବଳିର୍ ଫେଡ଼ନେ ଯାର୍ ଭର୍ସାକୃତ ରସାତଳର୍ (୧)
  କୋଟିଏ ସିଂହ ବଳ ବାଳର ଧର୍ଣେ ଇଚ୍ଛୁ ଯେ । (୨)
ସକଳ ଭ୍ରବ ନୋହିଲ୍ ଲବ ଯାଇ ନିବଡ଼ ଭିଡ଼ ପ୍ରାଭ୍ରବ
  କେମନ୍ତେ ମନ୍ନ୍ କୋବଦେ ଭ୍ରବ ତୁଲ କି ଅଛି ଯେ
  ବାହୁଁ ସହସ୍ର୍ ଭୁଜେ ହୋଇଲ୍ ଵାଦୀ ଯେ (୩)
  ବହୁବାରୁ ପାଲଟି ନର୍ମଦା ନଦୀ ଯେ ।
ବନ୍ଧନେ ପଡ଼ି ଖଡ଼୍‌ଗେ ନ ଛୁଡ଼ି ଅନଳ ଯୋଗେ ନ
  ଗଲ୍ ପୋଡ଼ି
  ଜଳେ ନ ବୁଡ଼ି ସଂଶୟ୍ଯ ଛାଡ଼ି ବଶେ ପ୍ରମୋଦେ ଯେ ॥୧୮॥

(୧) ବନ୍ଦୀ ବଳିର୍ ଫେଡ଼ନେ ଯାର୍ ଭର୍ସାକୃତ ରସାତଳର୍—

ଏକଦା ରାବଣ ସଭାକରି ମନ୍ତ୍ରୀଙ୍କୁ ପଚାରିଲା, 'ଆମ ରାକ୍ଷସ କୁଳର ଐତିହ୍ୟ ପ୍ରକାଶ କର ।' ମନ୍ତ୍ରୀ କହିଲେ, 'ମହାରାଜ ! ଆମର ରାକ୍ଷସ ବଂଶର ବୈରୋଚନ ପୁତ୍ର ବଳି ମହା ପ୍ରତାପୀ ଓ ଅମର ଥିଲେ । ନାରାୟଣ ତାଙ୍କୁ ବାମନାବତାରରେ ପାତାଳ ପୁରରେ ବନ୍ଦୀକରି ରଖିଛନ୍ତି ।' ରାବଣ ଏକଥା ଶୁଣି ଦିନେ ବଳି ରାଜାଙ୍କୁ ଉଦ୍ଧାର କରିବାକୁ ପାତାଳ ପୁରେ ଏକାକୀ ପ୍ରବେଶ କଲା । ଦେଖିଲା ସେଠାରେ କେହି ନାହାନ୍ତି । ସୁନ୍ଦର ଦେବ ଉପଭୋଗ୍ୟ ନଗରୀ । ରାବଣ ଆଶ୍ଚର୍ଯ୍ୟ ହୋଇ ବଳିକୁ ଖୋଜି ଖୋଜି ଯାଇ ଦେଖିଲା—ଗୋଟିଏ ସୁବର୍ଣ୍ଣ ମଣ୍ଡପ ଉପରେ ଜଣେ ବୃଦ୍ଧ

ଏବଂ ଜଣେ ବୃଦ୍ଧା ବସି ପଶା ଖେଳୁଛନ୍ତି । ତାଙ୍କର ପଶାକାଠିଟି ତଳକୁ ଗଡ଼ିପଡ଼ିଲା । ସେମାନେ ରାବଣକୁ ଦେଖି କହିଲେ, 'ଆଗନ୍ତୁକ ଆମର ପଶା କାଠିଟି ବଢ଼ାଇ ଦିଅନ୍ତୁ ।' ରାବଣ ତାର ସମସ୍ତ ଶକ୍ତି ପ୍ରୟୋଗ କରି ବିଂଶ ଭୁଜରେ ପଶାକାଠିଟି ଉଠାଇ ପାରିଲା ନାହିଁ । ଏତିକିବେଳେ ଜଣେ ଗର୍ଭିଣୀ ନାରୀ ମୁଣ୍ଡରେ ଓ କାଖରେ ଯୋଡ଼ିଏ ମାଠିଆ ପାଣି ଧରି ସେହି ରାସ୍ତାରେ ଯାଉଥିଲା । ବୃଦ୍ଧ ଏବଂ ବୃଦ୍ଧା କହନ୍ତେ ସେ ତାର ବାମ ପାଦର ଅଙ୍ଗୁଳିଦ୍ୱାରା ପଶାକାଠିଟି ଟେକି ମଣ୍ଡପ ଉପରକୁ ଫିଙ୍ଗିଦେଲା । ରାବଣ ଆଶ୍ଚର୍ଯ୍ୟ ହୋଇ ପଚାରିଲା, 'ଏ ନଗର ଭିତରେ ରାକ୍ଷସ ରାଜ ବଳି କେଉଁଠି ଅଛନ୍ତି ?' ବୃଦ୍ଧ ଅଙ୍ଗୁଳି ନିର୍ଦ୍ଦେଶ ଦ୍ୱାରା ଦେଖାଇ ଦେଲେ—'ଏହି ପଥ ଦେଇ ଯାଅ ! ବଳିର ସନ୍ଧାନ ପାଇବ ।' ରାବଣ ଚାଲିଗଲା । କିଛି ବାଟ ଯିବାପରେ ଦେଖିଲା ଗୋଟିଏ ରତ୍ନ ସିଂହାସନ ଉପରେ ଜଣେ ମହାବଳିଷ୍ଠକାୟ ପୁରୁଷ ବସିଛନ୍ତି । ସେ ତାଙ୍କୁ ପଚାରନ୍ତେ, ଉତ୍ତର 'ପାଇଲା ମୁଁ ନିଜେ ବୈରୋଚନ ପୁତ୍ର ବଳି ।'

ରାବଣ କହିଲା, 'କେଉଁ ନାରାୟଣ ତୁମକୁ ବନ୍ଦୀ କରିଛନ୍ତି ମୋତେ ଦେଖାଅ । ତାଙ୍କୁ ମାରି ମୁଁ ତୁମକୁ ଉଦ୍ଧାର କରିବା ପାଇଁ ଆସିଛି ।' ବଳି ବହୁ ଆଦର ଦେଖାଇ ରାବଣକୁ ସେଠାରେ ରଖିଲେ ଏବଂ ଉଦ୍ୟାନ ଭ୍ରମଣ କରିବାକୁ ସାଙ୍ଗରେ ନେଇ ଚାଲିଲେ । କିଛି ଦୂର ଯିବାପରେ ରାବଣ ଗୋଟିଏ ମଣିମୟ କୁଣ୍ଡଳ ପଡ଼ିଥିବାର ଦେଖିଲା । ସେଥିରେ ହିରା ନୀଳା, ମୋତି ମାଣିକ୍ୟ, ଖଚିତ ହୋଇଛି । ରାବଣ ସେ କୁଣ୍ଡଳ ପ୍ରତି ଲୋଭସକ୍ତ ହେଲା । ବଳି କହିଲେ, 'ଆପଣ ସେ କୁଣ୍ଡଳଟି ଆଣନ୍ତୁ ।' ରାବଣ ଆପ୍ରାଣ ଚେଷ୍ଟା କରି ତିଳେ ମାତ୍ର ଘୁଞ୍ଚାଇ ପାରିଲା ନାହିଁ ।

ବଳି ହସି ହସି କହିଲେ, 'ରାବଣ ! ମୋତେ ତୁମେ ଉଦ୍ଧାର କରିବ ? ପୁଣି ନାରାୟଣଙ୍କୁ ମାରିବ ? ଏହି ଶକ୍ତି ବଳରେ ? ଏକୁଣ୍ଡଳ କାହାର ଜାଣିଛ ?' ରାବଣ ମନା କରିଦେଲା । ବଳି ଉତ୍ତର ଦେଲେ—'ମୋ ପିତା ବୈରୋଚନ । ତାଙ୍କ ପିତା ପ୍ରହ୍ଲାଦ । ତାଙ୍କ ପିତା ହିରଣ୍ୟକଶିପୁ ଏ କୁଣ୍ଡଳ କାନରେ ପିନ୍ଧିଥିଲେ । ହରିନୃସିଂହ ଅବତାର ହୋଇ ତାଙ୍କୁ ମାରିବାକୁ ଜଙ୍ଘ

ଉପରକୁ ଟେକି ଦିଅନ୍ତେ ଏ କୁଣ୍ଡଳ ପଟଟି କାନରୁ ଛିଡ଼ି ଏଠାରେ ପଡ଼ିଛି । ସୃଷ୍ଟିର କୌଣସି ଶକ୍ତି ନାହିଁ ଏ ପଟଟି ଏଠାରୁ ଉଠାଇ ନେବାକୁ । ତୁମେ ସେହି ନାରାୟଣଙ୍କୁ ମାରି ମୋତେ ଉଦ୍ଧାର କରିବ ? ଫେରିଯାଅ । ପାରିବ ନାହିଁ । ଯେଉଁ ବୃଦ୍ଧ ପଶା ଖେଳୁଥିଲେ ସେ ହେଉଛନ୍ତି ସ୍ୱୟଂ ନାରାୟଣ ।' ରାବଣ ଲଜ୍ଜିତ ହୋଇ ଫେରି ଆସିଲା ।

—ରାମାୟଣ ଉତ୍ତରାକାଣ୍ଡ

## (୨) କୋଟିଏ ସିଂହ ବଳ ବାଜିର ଧରଣେ ଇଚ୍ଛା ଯେ—

ପ୍ରବାଦ ଅଛି—ଦିନେ ରାବଣ ସଭାରେ ଦେଖିଲା, ସମସ୍ତ ଦେବତାମାନେ ତାର ସେବାରେ ନିଯୁକ୍ତ ଅଛନ୍ତି । କିନ୍ତୁ ପିତାମହ ବ୍ରହ୍ମା ନାହାନ୍ତି । ଶୁକ, ସାରଣଙ୍କୁ ପଚାରନ୍ତେ ସେ ଉତ୍ତର ଦେଲେ, 'ବ୍ରହ୍ମା ବହୁଦିନ ଧରି ତାଙ୍କ କାର୍ଯ୍ୟରେ ଯୋଗଦେଇ ନାହାଁନ୍ତି । ବେଦ ପାଠ ବନ୍ଦ ଅଛି ।' ପର ଦିନ ପ୍ରତ୍ୟୁଷରୁ ରାବଣ ବ୍ରହ୍ମମଣ୍ଡଳକୁ ଯାତ୍ରାକଲା । ଦେଖିଲା ବ୍ରହ୍ମା ବୈତରଣୀ କୂଳରେ ଗୋଟିଏ ବରପତ୍ର ଏବଂ ଗୋଟିଏ ଅଶ୍ୱତ୍ଥ ପତ୍ର ଉପରେ କ'ଣ ଲେଖି ନଦୀ ଜଳରେ ଭସାଇ ଦେଉଛନ୍ତି । ପୁନରାୟ ଯୋଡ଼ିଏ ପତ୍ର ଧରି କଣ ଲେଖା ଆରମ୍ଭ କରୁଛନ୍ତି । ରାବଣ ପଚାରିଲା, 'ପିତାମହ; ଆପଣ କାହିଁକି ବହୁଦିନ ଧରି ମୋ ଦ୍ୱାରରେ ବେଦପାଠ ନ କରି ଅବହେଳା କରିଛନ୍ତି ?' ବ୍ରହ୍ମା ଉତ୍ତର ଦେଲେ, 'ବାପା ! ସୃଷ୍ଟିର ଦାୟିତ୍ୱ ମୋ ଉପରେ । କାହା କନ୍ୟା ସହ କାହା ସନ୍ତାନର ବିବାହ, ଏ ପ୍ରସ୍ତାବ ସ୍ଥିର କରି ଭାଗ୍ୟ ପତ୍ରରେ ଉଲ୍ଲେଖ ନ କଲେ ସଂସାର ଚଳିବ କିପରି ? ଏଣୁ ଫୁରୁସତ୍ ହେଉ ନାହିଁ ।' ଏତିକି କହି ଲେଖୁଥିବା ପତ୍ର ଦୁଇଟି ପାଣିରେ ଭସାଇ ଦେଲେ । ରାବଣ ତତ୍କ୍ଷଣାତ ଦୁଇଟିଯାକ ପତ୍ର ଉଠାଇ ପାଠକଲା । ପୂର୍ବାଞ୍ଚଳ ରାଜକନ୍ୟା ସହ ପଶ୍ଚିମାଞ୍ଚଳ ରାଜପୁତ୍ରର ବିବାହ ଆସନ୍ତା ମାଘ ଶୁକ୍ଳ ପଞ୍ଚମୀ ଦିନ ସ୍ଥିର ହୋଇଛି । ରାବଣ ପଚାରିଲା' 'ପିତାମହ ! ଆପଣ ମୋତେ ଠକିବା ପାଇଁ ଏ ମିଛ ପ୍ରହେଳିକା କାହିଁକି ସୃଷ୍ଟି କରିଛନ୍ତି ? ଏହା କ'ଣ ସମ୍ଭବ ?' ବ୍ରହ୍ମା ଉତ୍ତର ଦେଲେ; 'ବିଧିର ବିଧାନ ଅନ୍ୟଥା ହେବ ନାହିଁ ।' ରାବଣ ଦୁଇଟିଯାକ ପତ୍ର ନେଇଗଲା ଏବଂ କହିଲା, 'ପିତାମହ ! ଏ ପ୍ରସ୍ତାବ ନିର୍ଦ୍ଦିଷ୍ଟ ଦିନ ଯଦି ନ ହୁଏ ତେବେ

ତୁମର ଅବସ୍ଥା ଶୋଚନୀୟ ହେବ । ତୁମେ ଏଣିକି ମୋର ଶୌର୍ଯ୍ୟଲୟ ଦେଖିବାକୁ ପଡ଼ିବ । କିପରି ତୁମ ବିଧାନ ସଂସାରରେ ସ୍ଥିର ମୁଁ ଦେଖିବି ।' ଏହା କହି ରାବଣ ପୂର୍ବାଞ୍ଚଳକୁ ଯାତ୍ରାକଲା ଏବଂ ରାଜକୁମାରୀକୁ ହରଣ କରି ନେଇ ଆସିଲା । ପଶ୍ଚିମାଞ୍ଚଳ ରାଜପୁତ୍ରକୁ ହରଣ କରି ନିଜ ନଗରର ଦୁଇଟି କୋଠରୀ ମଧ୍ୟରେ ରଖି ଚାବି ପକାଇ ନିଜ ଦାୟିତ୍ୱରେ ରଖିଲା । ଚିନ୍ତାକଲା ବିଧାତା କିପରି ତାଙ୍କ ବାକ୍ୟ ରକ୍ଷା କରିବେ ଦେଖିବି ।

ଏ କଥା ଜାଣି ପିତାମହ ବିସ୍ମିତ ହୋଇ ଚିନ୍ତାକରି ବସିଛନ୍ତି । ଏହି ସମୟରେ ନାରଦ ବ୍ରହ୍ମାଙ୍କ ନିକଟରେ ପହଞ୍ଚି ପଚାରିଲେ, 'ପିତା ! ଆପଣଙ୍କ ମନରେ ଦୁଃଖ କାହିଁକି ?' ବ୍ରହ୍ମା ଆମୂଳଚୂଳ ସମସ୍ତ ଘଟଣା କହିଗଲେ । ନାରଦ ବ୍ରହ୍ମାଙ୍କୁ ସାନ୍ତ୍ୱନା ଦେଇ ଲଙ୍କାଗଡ଼ରେ ପହଞ୍ଚିଲେ । ଦେଖିଲେ—ରାବଣ ଅନ୍ୟତ୍ର ଦିଗ୍‌ବିଜୟ କରି ଯାଇଛି । ଅନ୍ତଃପୁର ମଧ୍ୟରେ ମନ୍ଦୋଦରୀଙ୍କ ନିକଟରେ ନାରଦ ପହଞ୍ଚିଲେ । ମନ୍ଦୋଦରୀ ପାଦ ପ୍ରକ୍ଷାଳନ କରି ପ୍ରଣାମକରି ନାରଦଙ୍କୁ ଉଚ୍ଚାସନରେ ବସାଇ ପଚାରିଲେ, 'ହେ ଜେଜେ ! କି ନିମନ୍ତେ ଅକସ୍ମାତ୍ ଆପଣଙ୍କ ଆବିର୍ଭାବ ହେଲା ?; ନାରଦ କହିଲେ, 'ମନ୍ଦୋଦରୀ ତୋତେ କ'ଣ କହିବି ? ମୋର ଗର୍ବଥିଲା ରାବଣ ପୃଥିବୀର ଏକଛତ୍ର ବୀର । ସେ ଆମ୍ଭ ବଂଶର ମହତ ରଖିଛି । କିନ୍ତୁ ଆଜି ଆସୁଥିବା ବେଳେ କିଷ୍କିନ୍ଧା ନଗରୀ ବାଳିକୁ ଦେଖି ତାର ଓଜ ଆଗରେ ରାବଣ କିଛି ନୁହେଁ ବୋଲି ମୁଁ ମନେ ମନେ ସ୍ଥିର କରିଛି ।, ମନ୍ଦୋଦରୀଙ୍କୁ ନାରଦ ଏତିକି କହି ଅନ୍ତର୍ଦ୍ଧାନ ହେଲେ । ମନ୍ଦୋଦରୀ ମନେ ମନେ ଚିନ୍ତାକଲେ—ମୋ ସ୍ୱାମୀ ଏକଛତ୍ର ବୀର । ଏଣୁ ବାଳିକୁ ଜୟକରିବା ଏକାନ୍ତ ଆବଶ୍ୟକ । ଏହା ଭାବି ଅଭିମାନ କରି ବସିରହିଲେ । ରାବଣ ଦିଗ୍‌ବିଜୟରୁ ଫେରି ଅର୍ଦ୍ଧ-ରାତ୍ରରେ ମନ୍ଦୋଦରୀ କକ୍ଷରେ ପ୍ରବେଶ କରି ଦେଖିଲେ—ମନ୍ଦୋଦରୀ ମୁହଁ ଶୁଖାଇ ବସିଛନ୍ତି । କାମାସକ୍ତ ରାବଣ ବହୁତ ବିନୟ ହୋଇ ପଚାରନ୍ତେ, ମନ୍ଦୋଦରୀ କହିଲେ, 'ହେ ସ୍ୱାମୀ, ଆପଣ ଯଦି କାଲି ସୂର୍ଯ୍ୟାସ୍ତ ପୂର୍ବରୁ ବାଳି ବାନରକୁ ବାନ୍ଧିଆଣି ଦେବେ ତେବେ ମୋର ଅଭିଳାଷ ପୂର୍ଣ୍ଣ ହେବ ।' ରାବଣ ଉତ୍ତର ଦେଲା, 'ଏ ସାମାନ୍ୟ କଥାକୁ କାହିଁକି ଅଭିମାନ କରିଛ ? ମୁଁ ନିଶ୍ଚୟ କାଲି ସନ୍ଧ୍ୟା ପୂର୍ବରୁ ବାଳିକୁ ବାନ୍ଧି ତୁମ ପାଦତଳେ ପହଞ୍ଚାଇ ଦେବି ।'

ସେଦିନ ରାତି ସୁଖରେ ପାହିଲା । ରାବଣ ପରଦିନ ପ୍ରତ୍ୟୁଷରୁ କିଷ୍କିନ୍ଧାରେ ପହଞ୍ଚି ବୁଝିଲା ବାଳି ସମୁଦ୍ରକୁ ତର୍ପଣ କରିବାକୁ ଯାଇଛି । ରାବଣ ସମୁଦ୍ର ନିକଟକୁ ଯାଇ ଦେଖିଲା ସମୁଦ୍ର ମଧ୍ୟରେ ପର୍ବତ ପରି ଗୋଟାଏ ୯.'ଣ ଦେଖା ଯାଉଛି । ଏ କି ଜୀବ ବୋଲି ଚିନ୍ତାକରି ଆସ୍ତେ ଆସ୍ତେ ଯାଇ ବାଳିର କିଛି ଦୂରରେ ରହି ଜାଣିଲା କେହି ଜଣେ ତର୍ପଣ କରୁଛି । ମନେ ମନେ ସ୍ଥିର କଲା । ଏ ନିଶ୍ଚୟ ବାଳି । ଯାହାର ଏପରି ଆକାର ପ୍ରକାର ନିଶ୍ଚୟ ସେ ଶକ୍ତିଶାଳୀ ହୋଇଥିବ । ଏଣୁ ମନରେ ଭୟ ଓ ଆଶଙ୍କା ରଖି ଧୈର୍ଯ୍ୟ ଧରି ଧୀରେ ଧୀରେ ବାଳି ନିକଟକୁ ଯାଇ ବିଂଶ ହସ୍ତରେ ପାଣି ବୋହି ବାଳି ଉପରକୁ ପୋପାଡ଼ିଲା । ବାଳି ତର୍ପଣରେ ବାଧା ହେବାରୁ ପଛକୁ ବୁଲି ଚାହିଁଲା । ଏ ଗୋଟିଏ ବିଚିତ୍ର ଜୀବ । ଏଣୁ ଲାଙ୍ଗୁଡ଼ ବଢ଼ାଇ ରାବଣକୁ ବାନ୍ଧି ନେଇ ନିଜ କାଖରେ ଯାକିଦେଲା । ତର୍ପଣ ସାରି ଘରକୁ ଫେରିଲା । ଲୁଗା ପିନ୍ଧିବା ସମୟରେ ରାବଣ କାଖରୁ ଖସି ପଡ଼ିଲା । ଅଙ୍ଗଦ ଏ ବିଚିତ୍ର ଜୀବଟିକୁ ଦେଖି ଖେଳିବାକୁ ବେକରେ ଦଉଡ଼ି ବାନ୍ଧି ନଚାଇଲା । ଏପରି କିଛି ଦିନ ବିତିଗଲା । ରାବଣ ବନ୍ଧନରେ ଥାଇ ଅଙ୍ଗଦ ଠାରୁ ଛାଟ ମାଡ଼ ଖାଇ ପ୍ରତିଦିନ ନାଚୁଥାଏ ।

ଠିକ୍ ବିଧାତାଙ୍କ ବିଧାନ ଦିବସ ଉପସ୍ଥିତ ହେଲା । ନାରଦ ଯାଇ ମନ୍ଦୋଦରୀ ନିକଟରେ ପହଞ୍ଚିଲେ । କହିଲେ, 'ମନ୍ଦୋଦରୀ ! ତୋ ସ୍ୱାମୀ ବର୍ତ୍ତମାନ ବଡ଼ ବିପଦରେ ପଡ଼ି ବାଳିଦ୍ୱାରା ବନ୍ଧନ ହୋଇ ବଡ଼ କଷ୍ଟ ଅନୁଭବ କରୁଛି । ତାର ବଞ୍ଚିବାର ସମ୍ଭାବନା ନାହିଁ । ଯେହେତୁ ତୁମକୁ ଗ୍ରହପୀଡ଼ା ପଡ଼ିଛି ।' ମନ୍ଦୋଦରୀ ଏ କଥା ଶୁଣି ବ୍ୟାକୁଳିତା ହୋଇ କହିଲେ, 'ହେ ଦେବ ! ଏହାର ପ୍ରତିକାର କଣ ? ଆପଣ ଶୀଘ୍ର କୁହନ୍ତୁ । ନାରଦ କହିଲେ, 'ଏଥିକୁ ଏକମାତ୍ର ପ୍ରତିକାର କନ୍ୟାଦାନ । ତୁମେ ଗୋଟିଏ କନ୍ୟାକୁ ଉତ୍ତମ ପାତ୍ର ହସ୍ତରେ ଦାନକର । ମନ୍ଦୋଦରୀ କହିଲେ, 'ଆମର ତ କନ୍ୟା ନାହିଁ । ମୁଁ କ'ଣ କରିବି ?' ନାରଦ କହିଲେ; 'କନ୍ୟା ସାତ ପ୍ରକାର । ତୁମେ ଗୋଟିଏ ଧର୍ମ ଦୁହିତା ଗ୍ରହଣ କରି ଉତ୍ତମ ବର ପାତ୍ରକୁ ଦାନକର ।' ମନ୍ଦୋଦରୀ କହିଲେ, 'ବର୍ତ୍ତମାନ କନ୍ୟା କେଉଁଠୁ ମିଳିବ ?' ନାରଦ ବନ୍ଦିରେ ଥିବା କନ୍ୟାଟି କଥା ଦର୍ଶାଇ ଦିଅନ୍ତେ ମନ୍ଦୋଦରୀ

ପୂର୍ବାଞ୍ଚଳ କନ୍ୟାଟିକୁ କାରାଗାରରୁ ଆଣି ଧର୍ମ ଝିଅ କଲେ । ନାରଦଙ୍କ ପରାମର୍ଶନେଇ ପଶ୍ଚିମାଞ୍ଚଳ ରାଜକୁମାରକୁ ଉଦ୍ଧାର କରି ବିବାହର ଆୟୋଜନ କଲେ । ବିଭାକାର୍ଯ୍ୟ ଆଡ଼ମ୍ବର ସହକାରେ ଆରମ୍ଭ ହେଲା । ନାରଦ ଏ ଅବସରରେ କିଷ୍କିନ୍ଧା ଯାଇ ବାଳିଦ୍ୱାରରେ ପହଞ୍ଚିଲେ । ବାଳି ସସମ୍ମାନେ ନାରଦଙ୍କୁ ଅଭିନନ୍ଦନ ଜଣାଇ ଅନ୍ତଃପୁର ମଧ୍ୟକୁ ନେଲେ । ଅଙ୍ଗଦ ଏ ସମୟରେ ରାବଣକୁ ବାନ୍ଧି ସେଠାରେ ପହଞ୍ଚିଲେ । ନାରଦ ବାଳିକୁ କହିଲେ, 'ବାଳି ! ଏ ବିଶ୍ରବାଋଷିଙ୍କ ପୁଅ ରାବଣ । ଏହାକୁ ମାରିଲେ ବ୍ରହ୍ମହତ୍ୟା ଦୋଷ ଲାଗିବ । ଏହାକୁ ଛାଡ଼ି ଦିଅ ।' ଏ କଥା ଶୁଣି ବାଳି କହିଲା, 'ଅଙ୍ଗଦ ! ଏ ବ୍ରାହ୍ମଣ ପୁତ୍ର । ଏହାକୁ ଆଉ ଦଣ୍ଡ ନ ଦେଇ ଛାଡ଼ିଦେ ।' ଅଙ୍ଗଦ ଏ କଥା ଶୁଣି ରାବଣ ବେକରେ ବନ୍ଧା ହୋଇଥିବା ଦଉଡ଼ିକୁ ବୁଲାଇ ବୁଲାଇ ଫିଙ୍ଗି ଦିଅନ୍ତେ ରାବଣ ଆସି ଲଙ୍କାରେ ପଡ଼ିଲା । ଆଣ୍ଠୁ ଗଣ୍ଠି ଛିଡ଼ି ରକ୍ତ ଧାର ଧାର ବହି ଗଲିଛି । ବହୁ କଷ୍ଟରେ ଉଠି ଦେଖେତ ଲଙ୍କାରେ ପଟୁଆରି ଗଲିଛି । ଏ କ'ଣ ? ମୁଁ ତ ଲଙ୍କାରେ ନାହିଁ । ଏପରି ପଟୁଆରର କାରଣ କ'ଣ ? ଏଭଳି ନିଜକୁ ନିଜେ ପ୍ରଶ୍ନକରି ଉଆସ ମଧ୍ୟରେ ପ୍ରବେଶକରି ଦେଖିଲା— ପୂର୍ବାଞ୍ଚଳ ରାଜକୁମାରୀ ସହ ପଶ୍ଚିମାଞ୍ଚଳ ରାଜକୁମାରର ବିବାହ ସମାପନ ହୋଇଛି ବିଧାତା ବିଧାନ ଅନ୍ୟଥା କରିବାକୁ କାହାର ଶକ୍ତି ନାହିଁ ।

—ରାମାୟଣ

## (୩) କାହୁଁ ସହସ୍ରଭୁଜେ ହୋଇଲା ବାଦୀ ଯେ—

ଦିନେ ରାବଣ ସଭାରେ ପ୍ରଶ୍ନ କଲା, 'ମୋ ନଗରରେ କଣ ଅଭାବ ଅଛି ?' ଶୁକସାରଣ କହିଲେ, 'ହେ ରକ୍ଷାଧିରାଜ ! ଆପଣ ଗୋଟିଏ ଶିବଲିଙ୍ଗ ଏ ନଗରରେ ସ୍ଥାପନ କଲେ ସମସ୍ତ ବିଭବ ଅକ୍ଷୟ ରହିବ ।' ରାବଣ ଯାଇ କୈଳାସରେ କଠୋର ତପସ୍ୟା କଲା । ଶିବ ଆବିର୍ଭାବ ହେଲେ । ରାବଣ କହିଲା, 'ହେ ଦେବ ଦେବ ମହାଦେବ ! ଆପଣ ମୋ ନଗରରେ ରହି ପୂଜା ପାଇବେ । ମୁଁ ବର୍ତ୍ତମାନ ଆପଣଙ୍କୁ ଲଙ୍କାକୁ ନେଇଯିବି ।' ଶିବ କହିଲେ, 'ତୁ ବର୍ତ୍ତମାନ ଯଦି ମୋର ଲିଙ୍ଗ ମୂର୍ତ୍ତିକୁ ନେଇଯିବୁ ବାଟରେ କେଉଁଠି

ରଖିବୁ ନାହିଁ । ଯଦି କେଉଁଠି ରଖି ଦେଉ, ଯେ କେହି ମୋତେ ପୂଜାକରି ପାରିବେ । ମୁଁ ତାର ବଶବର୍ତ୍ତୀ ହୋଇ ରହିବି ।' ରାବଣ ସମ୍ମତି ଦେଇ ଶିବଲିଙ୍ଗ ଧରି ଲଙ୍କାକୁ ଯାତ୍ରା କଲା । ଦେବତାମାନେ ଦେଖିଲେ ଏ ପାପିଷ୍ଠ ଯଦି ଶିବଙ୍କୁ ନେଇଯାଏ ତେବେ ତାର ବିନାଶ ହେବ ନାହିଁ । ଏଣୁ ଗଙ୍ଗାଙ୍କୁ ପ୍ରାର୍ଥନା କରିବାରେ ଗଙ୍ଗା ଯାଇ ରାବଣର ଗର୍ଭରେ ପ୍ରବେଶ କଲେ । ରାବଣକୁ ଏତେ ପରିସ୍ରା ଲାଗିଲା ଯେ ସେ ଅସମ୍ଭାଳ ହୋଇ ପଡ଼ିଲା । ଚାରି ଆଡ଼କୁ ନିରୀକ୍ଷଣ କରି ନିର୍ଜ୍ଜନ ଜଙ୍ଗଲ ମଧ୍ୟରେ ଲିଙ୍ଗଟିକୁ ରଖି ପରିସ୍ରା କରିବାକୁ କାନରେ ପଇତା ଗୁଡ଼ାଇ କିଛି ଦୂରକୁ ଚାଲିଗଲା । ଗଙ୍ଗା ଯାହା ଗର୍ଭରେ ସ୍ଥାନ ନେଇଛନ୍ତି ରାବଣ ପରିସ୍ରା ସାରିବାରେ ବିଳମ୍ବ ହେଲା । ସେହି ସମୟରେ ଜରା ନାମକ ଶବର ସେ ବଣକୁ ଶିକାର ଉଦ୍ଦେଶ୍ୟରେ ଯାଇଥିଲା । ଅକସ୍ମାତ୍ ଶିବଲିଙ୍ଗ ଦେଖି ସେ ବନଫୁଲ ଦ୍ୱାରା ପୂଜାକାର୍ଯ୍ୟ ସମ୍ପାଦନକରି ଚାଲିଗଲା । ରାବଣ ଆସି ଶୌଚ ହୋଇ ଲିଙ୍ଗକୁ ଟେକନ୍ତେ ଆଉ ଉଠାଇ ପାରିଲା ନାହିଁ । ଶୂନ୍ୟବାଣୀ ହେଲା–'ରାବଣ, ମୋତେ ଶବର ରାଜା ପ୍ରଥମ ପୂଜା କରି ସାରିଛି । ଏଣୁ ଏଠାରୁ ଆଉ ଯାଇ ପାରିବି ନାହିଁ । ରାବଣ ଚିନ୍ତାମଗ୍ନ ହୋଇ ପୁଣି ସେଠାରେ କଠୋର ତପସ୍ୟା କରି ସେହି ଶିବଲିଙ୍ଗ ପୂଜା କଲା । ଏତିକି ବେଳେ ସହସ୍ରାର୍ଜ୍ଜୁନ କାର୍ତ୍ତବୀର୍ଯ୍ୟ ନିଜର ସ୍ତ୍ରୀମାନଙ୍କୁ ନେଇ ନର୍ମଦା ନଦୀରେ ସ୍ନାନ କରୁଛି । ସେ ତାର ସହସ୍ର ଭୁଜ ଦ୍ୱାରା ଏପରି ଭାବେ ହାତକୁ ହାତ ଛନ୍ଦି ବନ୍ଧ ପକାଇ ଦେଲାଯେ ନର୍ମଦା ଜଳ ବିନ୍ଦୁଏ ମାତ୍ର ନିମ୍ନଗାମୀ ନ ହୋଇ ଉଜାଣି ଉଠିଲା । ରାବଣ ନଦୀ ତଟରେ ପୂଜା କରୁଛି । ତାର ପୂଜା ସାମଗ୍ରୀ ନଦୀ ଜଳରେ ଭସିଗଲା । ରାବଣ ରାଗିଯାଇ ତପସ୍ୟା ଭାଙ୍ଗି ଦେଖେତ ଏ କର୍ମ ସହସ୍ରାର୍ଜ୍ଜୁନର । ତା ସହିତ କଳହ କରନ୍ତେ ରାବଣକୁ କାର୍ତ୍ତବୀର୍ଯ୍ୟ ବାନ୍ଧି ନେଇଗଲା । ମାରିବାକୁ ଯେତେ ଚେଷ୍ଟାକଲେ ମଧ୍ୟ ମାରି ପାରିଲା ନାହିଁ । ଖଡ଼୍ଗରେ ଛିଡ଼ିଲା ନାହିଁ, ଜଳରେ ବୁଡ଼ିଲା ନାହିଁ, ଅଗ୍ନିରେ ପୋଡ଼ିଲା ନାହିଁ । ତେଣୁ ତାକୁ ବନ୍ଦି କରି ରଖିଲା । ପୌଲସ୍ତ୍ୟ ଏ ଖବର ପାଇ ସହସ୍ରାର୍ଜ୍ଜୁନ ନଗରରେ ପ୍ରବେଶ ହେଲେ । ପୌଲସ୍ତ୍ୟଙ୍କୁ ଦେଖି ରାଜସିଂହାସନରେ ବସାଇ ସେ ପୂଜାକଲା । କହିଲା, 'ଗୁରୁଦେବ ! ଆପଣ ଅକସ୍ମାତ୍ କାହିଁକି ଆବିର୍ଭାବ ହେଲେ ?' ପୌଲସ୍ତ୍ୟ କହିଲେ, 'ବତ୍ସ ! ତୁ

ମୋର ନାତି ରାବଣକୁ ବନ୍ଦୀ କରି ରଖିଛନ୍ତି । ତାକୁ ଛାଡ଼ିଦେବେ । ଏକଥା ଶୁଣି କାର୍ତ୍ତବୀର୍ଯ୍ୟ ରାବଣକୁ ସସମ୍ମାନେ ବିଦାୟ ଦେଲା ।

—ଜଗମୋହନ ରାମାୟଣ

ଊନବିଂଶ ପଦ—

ବେଦମତୀରେ ମତ୍ତ ବଳାଇ (୧)
ଦେଲା ସେ କନ୍ୟା ତନୁ ଜଳାଇ
ମୋ ହେତୁ ମୃତ୍ୟୁ ଏ ଶାପ ପାଇ ତହୁଁ ଚପଳେ ଯେ ।
ବୋଲି ମର୍କଟ ନନ୍ଦି ନନ୍ଦୀ ରେ (୨)
ଆନନ୍ଦ ହସ୍ତ ତଳ ପ୍ରହାରେ
ବୋଲେ ସେ ହେଉ ପ୍ରାଭବ ତୋରେ
ବାନରେ ନରେ ଯେ ।
ବଧିଲା ଅନରଣ୍ୟକୁ ଅଯୋଧ୍ୟା ପୁରେ ଯେ ।
ବର୍ହିବରେ ଅନ୍ତ ମାୟାଯୁଦ୍ଧରେ ଯେ ।
ବଂଶେ ମୋ ନାଶ ଯିବୁ ଅବଶ୍ୟ
ନର ଅବଜ୍ଞା କଲୁ ରାକ୍ଷସ
କହିଲା ତହୁଁ ସେହି ମହୀଶ ହତ କାଳରେ ଯେ ।। ୧୯ ।।

(୧) ବେଦମତୀରେ ମତ୍ତ ବଳାଇ—

ବେଦମତୀ ନାମ୍ନୀ କନ୍ୟା ଭଗବାନଙ୍କୁ ପତି ରୂପରେ ପାଇବା ଇଚ୍ଛା କରି ଗହନ ବନ ମଧ୍ୟରେ କଠୋର ତପସ୍ୟାରେ ମଗ୍ନ ଥିଲେ । ଦିନେ ରାବଣ ମୃଗୟା ଉଦ୍ଦେଶ୍ୟରେ ସେହି ବନ ମଧ୍ୟରେ ତପସ୍ୟାରତ ବେଦମତୀଙ୍କୁ ବଳାତ୍କାର ପୂର୍ବକ ହରଣ କରିବାକୁ ଇଚ୍ଛା କରନ୍ତେ ବେଦମତୀ

ଯଜ୍ଞାଗ୍ନି ମଧ୍ୟରେ ଝାସ ଦେଲେ ଏବଂ ତତ୍ ପୂର୍ବରୁ ରାବଣକୁ ଅଭିଶାପ ଦେଲେ, 'ରେ ଦୁରାଗ୍ରହ, ଆଜି ତୁ ମୋର ତପସ୍ୟା ନଷ୍ଟ କଲୁ ଏଣୁ ମୋ ପୋଗୁଁ ତୋର ମୃତ୍ୟୁ ହେବ । ଏହି ଅଭିଶାପ ଦେଇ ଅଗ୍ନିରେ ଝାସ ଦେବାରେ ସତୀସାଧ୍ୱୀ ବେଦମତୀଙ୍କ ପବିତ୍ର ଶରୀରକୁ ଅଗ୍ନି ଦଗ୍‌ଧୀଭୂତ କରି ପାରିଲେ ନାହିଁ । ସେ ଦରପୋଡ଼ା ଶରୀରଟି ରାବଣ ନେଇ ଆସି ମନ୍ଦୋଦରୀକୁ ରାନ୍ଧିବାକୁ ଦେଲା । ମନ୍ଦୋଦରୀ ସେ ପିଣ୍ଡଟିକୁ ରାନ୍ଧିବାକୁ ତତ୍ପର ହେବା ସମୟରେ ଦେବତାମାନଙ୍କ ବାକ୍ୟରେ ମହର୍ଷି ନାରଦ ଲଙ୍କାରେ ପ୍ରବେଶକଲେ । ମନ୍ଦୋଦରୀ ସସମ୍ମାନେ ଆସନ ଦେଇ ବସାଇଲେ । ନାରଦ କହିଲେ, 'ନାତୁଣୀ ! ତୋ ନିକଟରେ ମୋର ଗୋଟିଏ ଭିକ୍ଷା ଅଛି । ଏ ପିଣ୍ଡ ଦେବଲୋକର ହିତ ସାଧନ କରିବ । ଏଣୁ ଏ ପିଣ୍ଡଟି ନଷ୍ଟ ନ କରି ରାବଣର ଅଜ୍ଞାତରେ ଏହାକୁ ଗୋଟିଏ ମଞ୍ଜୁଷାରେ ଭରି ସମୁଦ୍ରରେ ଭସାଇଦେ ଏବଂ ଅନ୍ୟ ମାଂସ ରନ୍ଧନ କରି ରାବଣକୁ ଦେଇ ସନ୍ତୋଷ କର ।' ନାରଦଙ୍କ କଥାରେ ମନ୍ଦୋଦରୀ ତଦନୁଯାୟୀ ପିଣ୍ଡଟିକୁ ମଞ୍ଜୁଷାରେ ପୂରାଇ ସମୁଦ୍ର ଗର୍ଭରେ ଭସାଇ ଦେଲେ । ଉକ୍ତ ମଞ୍ଜୁଷା କାଳକ୍ରମେ ଜନକଙ୍କ ଯଜ୍ଞ ଭୂମିରୁ ବାହାରିଲା ଏବଂ ସେହି ଅର୍ଦ୍ଧଦଗ୍‌ଧ ମାଂସ ପିଣ୍ଡ ସୀତା ରୂପରେ ଆବିର୍ଭାବ ହୋଇ ରାବଣ ବିନାଶର କାରଣ ହେଲା ।

—ରାମାୟଣ

## (୨) ବୋଲ ମର୍କଟ ନନ୍ଦି ନନ୍ଦୀରେ—

ଦିନେ ରାବଣ ଦିଗ୍‌ବିଜୟ ଉଦ୍ଦେଶ୍ୟରେ ଯାଇ କୈଳାସରେ ପହଞ୍ଚିଲା । ନନ୍ଦି ନାମଧେୟ ଦ୍ୱାରୀ ଦ୍ୱାର ଅବରୋଧ କରନ୍ତେ ମହା-ପ୍ରତାପୀ ରାବଣ ନନ୍ଦୀକୁ ମର୍କଟ ବୋଲି କହି ନିନ୍ଦାକରି ଗୁପ୍ତଚାଏ ପ୍ରହାର କଲା । ରାବଣ ଦ୍ୱାରା ପରାଭବ ପାଇଁ ଶିବ ବାହାନ ନନ୍ଦୀ ରାବଣକୁ ଅଭିଶାପ ଦେଲେ, 'ଆରେ ଦୁରାଗ୍ରହ ତୁ ମୋତେ ମର୍କଟ କହି ନିନ୍ଦା କଲୁ । ଏଣୁ ତୁ ସେହି ମର୍କଟଙ୍କ ଦ୍ୱାରା ହିଁ ପରାଭବ ପାଇବୁ ।'

—ରାମାୟଣ

—୦—

## ଦ୍ୱିତୀୟ ଛାନ୍ଦ

ଚତୁର୍ଥ ପଦ—

**ବାହୁଡ଼ ଲୀଳା ରୋହୁଡ଼ ରୋହୁଡ଼ ମୂରତି ।**
**ବେଗେ ବରବୈଦେତ୍ୟ ବରଦାନେ ହେଲ ରତି ହେ ।। ୪ ।।**

ପୂର୍ବ କାଳରେ ଶଙ୍ଖାସୁର ନାମରେ ଜଣେ ମହାପ୍ରତାପୀ ଓ ପରାକ୍ରମଶାଳୀ ଦୈତ୍ୟ ଥିଲା । ଦିନେ ଶଙ୍ଖାସୁର ବିଗ୍ରର କଲା ମୋ ସମାନ ବୀର କେହି ନାହିଁ । ମୁଁ ସୃଷ୍ଟି ମଧ୍ୟରେ ସର୍ବେସର୍ବା ହେବା ବିଧେୟ । କିନ୍ତୁ ଏ ବିଧାତାଟା ଥାଇ ବଡ଼ ଅଡ଼ୁଆ କରୁଛି । ଏହାକୁ ମାରି ମୁଁ ସୃଷ୍ଟିକର୍ତ୍ତା ପଦ ନେବି । ବିଧାତା ନିକଟରେ ଯେଉଁ ବେଦ ଅଛି ପ୍ରଥମେ ତାକୁ ଆୟତ୍ତ କରିବା କର୍ତ୍ତବ୍ୟ । ଏତେ ଭାବି ଦୈତ୍ୟରାଜ ଦିନେ ଦେଖିଲା ବିଧାତା ବେଦପୋଥି ସମୁଦ୍ର କୂଳରେ ରଖି ତର୍ପଣ କରୁଛନ୍ତି । ଏହି ସୁଯୋଗରେ ଶଙ୍ଖାସୁର ବେଦପୋଥିକୁ ଗ୍ରେସଭ ନେଇ ଅତଳ ସାଗର ଗର୍ଭରେ ଲୁଚି ରହିଲା । ବ୍ରହ୍ମା ତର୍ପଣ ସାରି ଦେଖନ୍ତିତ ବେଦପୋଥି ନାହିଁ । ଧ୍ୟାନରେ ଜାଣିଲେ ଶଙ୍ଖାସୁର ହରଣକରି ନେଇ ରତ୍ନାକର ଗର୍ଭରେ ଲୁଚି ରହି ବେଦ ଅଧ୍ୟୟନ ଅଭ୍ୟାସ କରୁଛି । ନିରୁପାୟ ହୋଇ ପିତାମହ ନାରାୟଣଙ୍କୁ ଧ୍ୟାନ କଲେ । ବ୍ରହ୍ମାଙ୍କର ସ୍ତବରେ ସନ୍ତୁଷ୍ଟ ହୋଇ ନାରାୟଣ ଶୂନ୍ୟବାଣୀଦ୍ୱାରା ଜଣାଇଲେ, 'ବ୍ରହ୍ମା, ତୁମେ ନିଶ୍ଚିନ୍ତ ରୁହ । ମୁଁ ଅଳ୍ପଦିନ ମଧ୍ୟରେ ତୁମର ବେଦ ଉଦ୍ଧାର କରି ତୁମକୁ ଦେବି ।'

କିଛି ଦିନ ପରେ ମହର୍ଷି କଶ୍ୟପ ତର୍ପଣ ସାରି ଦେଖନ୍ତିତ ତାଙ୍କ କମଣ୍ଡଳୁ ମଧ୍ୟରେ ଗୋଟିଏ ମୀନ ଅଛି । ସେ ମୀନଟି କୋଟି ସୂର୍ଯ୍ୟର କାନ୍ତି ଧାରଣ କରିଛି । ସ୍ୱର୍ଣ୍ଣମୟ ଶରୀର । ମୀନଟିକୁ ଦେଖି କଶ୍ୟପ

ଅଷର୍ଯ୍ୟ ହୋଇ ଧ୍ୟାନ କଲେ । ଯୋଗବଳରେ ଜାଣି ପାରିଲେ, ଏ ହେଉଛନ୍ତି ଅଖିଳ ବିଶ୍ୱଚିନ୍ତାମଣି ସ୍ୱୟଂ ଭଗବାନ ମୋ କମଣ୍ଡଳୁ ମଧ୍ୟରେ ଆବିର୍ଭାବ । ଏ ନିଶ୍ଚୟ ସୃଷ୍ଟିର କୌଣସି ଉପକାର କରିବେ । ଏହି କଥା ଚିନ୍ତାକରି ମହର୍ଷି କଶ୍ୟପ ଅତି ଯତ୍ନସହକାରେ ସେ ମୀନଟିକୁ ପାଳିଲେ । କ୍ରମେ କ୍ରମେ କମଣ୍ଡଳୁ ପୂର୍ଣ୍ଣ ହୋଇଗଲା । ମୀନଟି ବଢ଼ିବାକୁ ଲାଗିଲା । ମହର୍ଷି କଶ୍ୟପ ତାକୁ ନେଇ ଗୋଟିଏ ସରୋବର ମଧ୍ୟରେ ଛାଡ଼ିଲେ । ଦେଖୁ ଦେଖୁ ସରୋବରରେ ମଧ୍ୟ ମୀନଟି ରହିବାକୁ ସ୍ଥାନହେଲା ନାହିଁ । କଶ୍ୟପ ସେଠାରୁ ନେଇ ଗଙ୍ଗା ମଧ୍ୟରେ ଛାଡ଼ିଦେଲେ । କ୍ରମେ କ୍ରମେ ସେ ମୀନଟି ବିଶାଳ ରୋହିମାଛ ରୂପଧରି ଗଙ୍ଗାଜଳରୁ ଯାଇ ସାଗର ମଧ୍ୟରେ ପ୍ରବେଶ କଲା । ଏହି ମୀନରୂପୀ ଭଗବାନ ଅତଳଗର୍ଭ ରତ୍ନାକର ମଧ୍ୟରୁ ଶଙ୍ଖାସୁରକୁ ଖୋଜି ବାହାର କଲେ । କଟିଠାରୁ ନିମ୍ନଦେଶ ରୋହିମାଛ ଏବଂ ଢଟି ଉର୍ଦ୍ଧ୍ବରୁ ଚତୁର୍ଭୁଜମୂର୍ତ୍ତି ଧାରଣ କରି ଶଙ୍ଖାସୁରର କେଶାକର୍ଷଣପୂର୍ବକ ନିଜର ଚନ୍ଦ୍ରହାସ ଖଡ୍‌ଗଦ୍ୱାରା ତାକୁ ମାରି ବେଦ ଉଦ୍ଧାର କଲେ ଓ ବ୍ରହ୍ମାଙ୍କ ହସ୍ତରେ ଅର୍ପଣ କରି ପିତାମହଙ୍କର ଚିନ୍ତା ଦୂର କରିଥିଲେ ।

—ମତ୍ସ୍ୟ ପୁରାଣ

**ପଞ୍ଚମ ପଦ—**

**ବନ୍ଧ ଅମନ୍ଦମନ୍ଦର କୂର୍ମ କମୋନମ**
**ବାରିଧି ଅମୃତ ମନ୍ଥୁ ଅମୃତ ଜନମ ଯେ ।। ୫ ।।**

ଦେବାସୁର ମିଶି ସମୁଦ୍ର ମନ୍ଥନ କାର୍ଯ୍ୟ ଆରମ୍ଭ କଲେ । ଅତଳଗର୍ଭା ସମୁଦ୍ରକୁ ମନ୍ଥନ କରିବା ପାଇଁ ମନ୍ଦର ପର୍ବତକୁ ଘୁଆଦଣ୍ଡ ରୂପେ ନେଇ ସମୁଦ୍ର ମଝିରେ ଥୋଇ ଦେଲେ । କିନ୍ତୁ ସାଗରର ଅତଳ ଗର୍ଭରେ ମନ୍ଦର ପର୍ବତ ବୁଡ଼ିଗଲା । ଦେବତା ଓ ରାକ୍ଷସମାନେ କୌଣସି ଉପାୟ ନ ପାଇ ନାରାୟଣଙ୍କୁ ଚିନ୍ତାକଲେ । ଭଗବାନ ଦେବାସୁରଙ୍କର ପ୍ରାର୍ଥନା ଶୁଣି ଗୋଟିଏ କଚ୍ଛପ ରୂପ ଧରି ପୃଷ୍ଠରେ ପର୍ବତରାଜ ମନ୍ଦରକୁ ଧରି ଉଠିବାକୁ ଲାଗିଲେ ।

ଦେବତା ଓ ଅସୁରମାନେ ମନ୍ଦର ପର୍ବତ ଉପରକୁ ଉଠିବାର ଦେଖି ଆନନ୍ଦ ହୋଇ ବାସୁକି ନାଗକୁ ଦଉଡ଼ି ରୂପେ ବ୍ୟବହାର କରି ସମୁଦ୍ରକୁ ମନ୍ଥନ କଲେ ।

—କୂର୍ମପୁରାଣ

**ଷଷ୍ଠ ପଦ—**

**ବିପକ୍ଷେ ଦେବାର ବାରୁ ପରଷିଲ ସୁଧା ।**
**ବିଶ୍ୱମୋହନ ମୋହିନୀ ରୂପରେ ବିଶୁଦ୍ଧା ଯେ ॥ ୬ ॥**

ସମୁଦ୍ର ମନ୍ଥନରେ ଅଷ୍ଟଅପ୍‌ସରା, ଧନ୍ୱନ୍ତରୀ, ଚନ୍ଦ୍ର, ଉଚ୍ଚୈଃଶ୍ରବା, ଐରାବତ ଲକ୍ଷ୍ମୀ, ପାରିଜାତ ଓ ସୁରା ଇତ୍ୟାଦି ଦ୍ରବ୍ୟଜାତ ହେବାପରେ, ଅତି ଲୋଭକରି ସମୁଦ୍ର ମନ୍ଥନ କରିବାରେ, ଶେଷରେ ବିଷ ଜାତହେଲା । ସେ ବିଷକୁ ଦେବଦେବ ମହାଦେବ ଭକ୍ଷଣ କଲେ । ପରେ ପ୍ରତ୍ୟେକ ଦ୍ରବ୍ୟ ବଣ୍ଟନ ଶେଷହେଲା । ଅମୃତ ନିମନ୍ତେ ଦେବତା ଓ ଅସୁରଙ୍କ ମଧ୍ୟରେ କଳହ ଉପୁଜିଲା । ଦେବତାମାନଙ୍କ ହିତାକାଂକ୍ଷୀ ଶ୍ରୀମାନ୍ ନାରାୟଣ ଏ ସମୟରେ ମୋହିନୀ ରୂପ ଧାରଣ କରି ଆବିର୍ଭାବ ହେଲେ । ଦେବତା ଓ ଅସୁର ସେ ରୂପରେ ମୁଗ୍ଧ ହୋଇ ମୋହିନୀଙ୍କୁ ଅମୃତ ବାଣ୍ଟି ଦେବାକୁ କହିଲେ । ମୋହିନୀ ରୂପୀ ନାରାୟଣ ଦେବତା ଓ ଅସୁରଙ୍କୁ ଦୁଇଧାଡ଼ି କରି ବସାଇ ପ୍ରଥମେ ଦେବତାମାନଙ୍କଠାରୁ ଅମୃତ ପରଷିବା ଆରମ୍ଭକରି ଦେବତାମାନଙ୍କ ଶେଷରେ ଥିବା ଶେଷନାଗଙ୍କୁ ସବୁ ଅମୃତ ଦେଇ ଶେଷ କରି ଦେଲେ । ରାକ୍ଷସମାନେ ଅମୃତ ନ ପାଇ ବିରସ ହୋଇ ଫେରିଲେ ।

—କୂର୍ମପୁରାଣ

**ସପ୍ତମ ପଦ—**

**ବରାହବର ବରାହ ବର ସୁପଣ୍ଡିତ ।**
**ବଲ୍ଲଭ ମହୀର ହିରଣ୍ୟାକ୍ଷ ଖଣ୍ଡିତ ଯେ ॥ ୭ ॥**

ହିରଣ୍ୟାକ୍ଷ ଯୁଦ୍ଧ ଇଚ୍ଛାକରି ଯାଇ ଗଲା ହିରଣ୍ୟକଶିପୁକୁ ରାଜ୍ୟଭାର ଦେଇ ସୁମେରୁ ପର୍ବତରେ ବାହାସ୍ଫୁଟ ମାରିବାକୁ ଗଲା । ସୁମେରୁ ହିରଣ୍ୟାକ୍ଷକୁ ବିନୀତ ହୋଇ କହିଲା, 'ହେ ଦୈତ୍ୟରାଜ ! ତୁମେ ଯଦି ଯୁଦ୍ଧ କାମନା କରୁଛ ତେବେ ନାଗରାଜା ବାସୁକି ସହ ଯୁଦ୍ଧକର ।' ଏହା ଶୁଣି ହିରଣ୍ୟାକ୍ଷ ପାତାଳ ପୁରରେ ବାସୁକିକୁ ଯୁଦ୍ଧଭିକ୍ଷା କଲା । ବାସୁକି କହିଲେ, 'ହେ ଦୈତ୍ୟରାଜ ! ମୁଁ ତୁମ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛି । କିନ୍ତୁ ମୋ ମୁଣ୍ଡରେ ପୃଥିବୀ ଅଛି । ଏହାକୁ କେଉଁଠି ରଖିବି ଯେ ତୁମ ସହିତ ଯୁଦ୍ଧ କରିବି ?' ମହାପ୍ରତାପୀ ହିରଣ୍ୟାକ୍ଷ ଏକଥା ଶୁଣି କହିଲା, 'ହେ ନାଗରାଜ ! ତୁମର ମୋର ଯୁଦ୍ଧ ଶେଷ ହେବା ପର୍ଯ୍ୟନ୍ତ ପୃଥିବୀ ରଖିବା ଦାୟିତ୍ୱ ମୋ ଉପରେ । ଏହା କହି ପୃଥିବୀକୁ ବାସୁକି ମୁଣ୍ଡରୁ ଆଣି ଶୂନ୍ୟକୁ ଫୋପାଡ଼ି ଦେଲା । ହଜାର ହଜାର ବର୍ଷଧରି ପୃଥିବୀ ଶୂନ୍ୟରେ ଘୂରି ବୁଲିଲେ । ହିରଣ୍ୟାକ୍ଷର ଶକ୍ତି ଦେଖି ବାସୁକି ଭୟରେ ନାରାୟଣଙ୍କୁ ଚିନ୍ତାକଲା । ଏଣେ ପୃଥିବୀ ଅସହାୟ ଅବସ୍ଥାରେ ପ୍ରଭୁଙ୍କୁ ଚିନ୍ତା କଲେ । ଭଗବାନ ଏ ଉଭୟଙ୍କ ବ୍ୟାକୁଳତା ସହି ନ ପାରି ତତ୍‌କ୍ଷଣାତ୍ ଗୋଟିଏ ବରାହ ରୂପ ଧାରଣ କରି ଦନ୍ତାଗ୍ରରେ ପୃଥିବୀକୁ ଧରିନେଲେ ଏବଂ ଭୀଷଣ ଯୁଦ୍ଧ କରି ହିରଣ୍ୟାକ୍ଷ ଦୈତ୍ୟକୁ ବିନାଶ କରିଥିଲେ ।

—ବରାହ ପୁରାଣ

## ଅଷ୍ଟମ ପଦ—

**ବପୁବନ୍ତ ହରି ହରି ପ୍ରହ୍ଲାଦ ପୁଣ୍ୟକୁ ।**
**ବଦାରିଲ କରୀ ପରି କରି ହିରଣ୍ୟକୁ ଯେ ॥ ୮ ॥**

ହିରଣ୍ୟାକ୍ଷ ମୃତ୍ୟୁପରେ ହିରଣ୍ୟକଶିପୁ କଠୋର ତପସ୍ୟା କରି ବ୍ରହ୍ମାଙ୍କଠାରୁ ବରପ୍ରାପ୍ତ ହେଲା । ଦିନରେ ମରିବ ନାହିଁ, ରାତିରେ ମରିବ ନାହିଁ । କୌଣସି ଅସ୍ତ୍ରଶସ୍ତ୍ରରେ ମରିବ ନାହିଁ । କୀଟଠାରୁ ବ୍ରହ୍ମ ପର୍ଯ୍ୟନ୍ତ କୌଣସି ଜୀବ ଜଗତ ହାତରେ ମରିବ ନାହିଁ । ତଳେ କିମ୍ବା ଉପରେ ମରିବ ନାହିଁ । ଜଳ, ସ୍ଥଳ, ଅନଳ ଅନିଳ ଇତ୍ୟାଦି କାହାଦ୍ୱାରା ମରିବ

ନାହିଁ । ଏପରି କଠୋର ବର ପାଇ ନିଜରାଜ୍ୟକୁ ଫେରି ଆସି ରାଜତ୍ୱ କଲା ଏବଂ ରାଜ୍ୟରେ ଘୋଷଣା କରିଦେଲା ଆଜିଠାରୁ କେହି ନାରାୟଣ ପୂଜା କରିବେ ନାହିଁ କି ନାରାୟଣ ନାମ ଉଚ୍ଚାରଣ କରିବେ ନାହିଁ । ଏପରି କିଛି-ଦିନପରେ ଭଗବାନ ନିଜର ଭକ୍ତ ବୈଜୟନ୍ତକୁ ପ୍ରହ୍ଲାଦରୂପେ ହିରଣ୍ୟ-କଶିପୁ ପତ୍ନୀ କୟାଧୁଙ୍କ ଗର୍ଭରୁ ଜନ୍ମ କରାଇଲେ । ପ୍ରହ୍ଲାଦ ଜନ୍ମ ହୋଇ ଚାରି ବର୍ଷର ହେଲା । ପାଠ ପଢ଼ାଇବା ଇଚ୍ଛାକରି ହିରଣ୍ୟକଶିପୁ ଗୁରୁଦ୍ୱାରକୁ ପ୍ରହ୍ଲାଦକୁ ପଠାଇଲେ । ଗୁରୁଦ୍ୱାରରେ ପହଞ୍ଚି ପ୍ରହ୍ଲାଦ ପାଠ ପଢ଼ିବା ପାଇଁ ଖଡ଼ି ଧାରଣ କରନ୍ତେ ପ୍ରଥମେ ଗୁରୁ ତିନିଗୋଟି ଶୂନ ଲେଖି ଘୋଷିବାକୁ କହିଲେ । ପ୍ରହ୍ଲାଦ ପଚାରିଲେ, 'ଗୁରୁଦେବ ! ଏ ତିନୋଟି ଶୂନର କାରଣ କ'ଣ ?' ଗୁରୁ କହିଲେ, 'ବତ୍ସ ! ଏ ହେଉଛନ୍ତି ବ୍ରହ୍ମା, ବିଷ୍ଣୁ, ମହେଶ ।' ପ୍ରହ୍ଲାଦ ପୁଣି ପଚାରିଲେ, 'ଏମାନେ କିଏ ? ଏମାନଙ୍କ କାମ କଣ ?' ଗୁରୁ କହିଲେ, 'ଏ ହେଉଛନ୍ତି ତ୍ରିଦେବ । ବ୍ରହ୍ମା ସୃଷ୍ଟିକର୍ତ୍ତା । ବିଷ୍ଣୁ ପାଳନକର୍ତ୍ତା । ଶିବ ସଂହାର କର୍ତ୍ତା ।' ପ୍ରହ୍ଲାଦ ପୁଣି ପଚାରିଲେ, 'ଏମାନଙ୍କ ମଧ୍ୟରେ ବଡ଼ କିଏ ?' ଗୁରୁକହିଲେ, 'ଏମାନଙ୍କ ମଧ୍ୟରେ ଶ୍ରେଷ୍ଠ ହେଉଛନ୍ତି ବିଷ୍ଣୁ ନାରାୟଣ ।' ପ୍ରହ୍ଲାଦ ସେତିକି ଶୁଣି ଆଉ ପାଠ ନ ପଢ଼ି ନାରାୟଣ ନାମ ଭଜନ କରିବାରେ ଲାଗିଲେ । ମାତ୍ର ହିରଣ୍ୟକଶିପୁଙ୍କ ନିର୍ଦ୍ଦେଶକ୍ରମେ ବିଷ୍ଣୁନାମ ଭଜନ କରିବାକୁ ଗୁରୁମନା କଲେ । ଭାଗବତରେ ଉଲ୍ଲେଖ ଅଛି—

ଯଦି ବଞ୍ଚିବୁ ଦିନ କେତେ । ବିଷ୍ଣୁ ନ ଭଜ କଦାଚିତେ ।।
ଯେବେ ତୁ ବିଷ୍ଣୁକୁ ଭଜିବୁ । ଅଳପ ଦିନେ ନାଶଯିବୁ ।।

ଗୁରୁ ଯେତେମନା କଲେ ସୁଦ୍ଧା ପ୍ରହ୍ଲାଦ କେବଳ ସେହି ନାରାୟଣ ନାମ ହିଁ ଶ୍ରେୟ ଜ୍ଞାନକରି ଭଜନ କୀର୍ତ୍ତନ କରିବାରେ ଲାଗିଲେ । ହିରଣ୍ୟ-କଶିପୁ ଏ ଖବର ପାଇ ପୁତ୍ରକୁ ସେଥିରୁ ନିବର୍ତ୍ତାଇବା ପାଇଁ ସବୁ ପ୍ରକାର ପ୍ରଚେଷ୍ଟା କରି ନିରାଶ ହେଲେ । ଶେଷରେ ପ୍ରହ୍ଲାଦକୁ ମାରିଦେବା ପାଇଁ ଆଦେଶ ଦେଲେ । ଦୂତମାନେ ମଧ୍ୟ ପ୍ରହ୍ଲାଦକୁ ମାରିଦେବା ପାଇଁ ଅନେକ ଉପାୟ କଲେ—ପର୍ବତ ଉପରୁ ଫୋପାଡ଼ି ଦେଲେ, ସମୁଦ୍ରରେ ବୁଡ଼ାଇଲେ, ଅଗ୍ନି ମଧ୍ୟରେ ନିକ୍ଷେପ କଲେ, ହସ୍ତୀ ପାଦତଳେ ଚାପିଲେ, ସର୍ପ ଦଂଶନ କରାଇଲେ । ମାତ୍ର ଭଗବାନ ପ୍ରହ୍ଲାଦକୁ ସବୁ ବିପଦରୁ ରକ୍ଷା କରିନେଲେ ।

ହିରଣ୍ୟକଶିପୁ ନିରୁପାୟ ହୋଇ ଦିନେ ସଭ୍ୟାରେ ପ୍ରହ୍ଲାଦଙ୍କୁ ପଚାରିଲେ, 'ତୁ ଯେଉଁ ନାରାୟଣ ନାମ ଉଚ୍ଚାରଣ କରୁଛୁ ସେ ନାରାୟଣ କେଉଁଠି ଅଛନ୍ତି, ମୋତେ ଦେଖାଇ ପାରିବୁ ?' ପ୍ରହ୍ଲାଦ ଉତ୍ତରରେ କହିଲେ, 'ସେ ସର୍ବବ୍ୟାପକ । ଜଳ, ସ୍ଥଳ, ଅନଳ ଓ ଅନିଳ ସବୁଠାରେ ପୂରି ରହିଛନ୍ତି । ଭାଗବତରେ ପ୍ରମାଣ ଅଛି—

କାଷ୍ଠ ପାଷାଣ ତରୁ ତୃଣ,
ସକଳ ଘଟେ ନାରାୟଣ ।

ହିରଣ୍ୟକଶିପୁ ଏହାଶୁଣି କହିଲେ, 'ଏ ଶୃଙ୍ଖଳ ଖମ୍ବ ମଧ୍ୟରେ କ'ଣ ନାରାୟଣ ଅଛନ୍ତି ?' ପ୍ରହ୍ଲାଦ କହିଲେ, 'ହଁ ଏ ଖମ୍ବ ମଧ୍ୟରେ ମଧ୍ୟ ନାରାୟଣ ଅଛନ୍ତି ।' ଦୈତ୍ୟରାଜ ସେ କଥାଶୁଣି ଗଦାପ୍ରହାରକରି ଖମ୍ବଟିକୁ ଭାଙ୍ଗିଦେବାକ୍ଷଣି ଭଗବାନ ଅର୍ଦ୍ଧନରକୃତି ସିଂହ ରୂପରେ ସେ ଖମ୍ବରୁ ବାହାରି ପଡ଼ିଲେ ଓ ହିରଣ୍ୟକଶିପୁକୁ ନିଜ ଜାନୁ ଉପରକୁ ଟେକି ନଖଦ୍ୱାରା ତାର ଅନ୍ତନାଡ଼ି ବାହାର କରି ଚିରି ମାରିଦେଲେ ।

—ନରକେଶରୀ ପୁରାଣ

**ନବମ ପଦ—**

**ବାମନ ମନମୋହନ ହୋଇ ଭୂଦାନରେ ।**
**ବଳକୁ ବଳକ ଗୃପି ଅଧୋଭୁବନରେ ଯେ ।। ୯ ।।**

ପ୍ରହ୍ଲାଦ ପୁତ୍ର ବୈରୋଚନ ଏବଂ ବୈରୋଚନ ପୁତ୍ର ବଳି ପୂର୍ବ ପୁରୁଷଙ୍କ କୃତି ଅନୁସାରେ ପୃଥିବୀରେ ଯାଗ ଯଜ୍ଞ କରି ଧର୍ମ ଅର୍ଜ୍ଜନ କଲେ । ଦେବତାମାନେ ତାଙ୍କର ଏହି କର୍ମରେ ଅତିଷ୍ଠ ହୋଇ ଭୟରେ ନାରାୟଣଙ୍କ ଶରଣାପନ୍ନ ହେଲେ । ନାରାୟଣ ଦେବତାମାନଙ୍କ ବ୍ୟାକୁଳ ଜାଣି ମହର୍ଷି କଶ୍ୟପଙ୍କ ପତ୍ନୀ ଅଦିତିଙ୍କ ଗର୍ଭରୁ ବାମନ ରୂପରେ ଜନ୍ମ ହୋଇ ଭିକ୍ଷା କରିବା ଉଦ୍ଦେଶ୍ୟରେ ବଳିଙ୍କ ସିଂହଦ୍ୱାରରେ ଉପସ୍ଥିତ ହୋଇ ବେଦଗାନ କଲେ ।

ପ୍ରତିଦିନ ପରି ଦାନ ଦେଇ ସାରି ମଧ୍ୟାହ୍ନ ଭୋଜନକୁ ଯିବା ସମୟରେ ବଳି କର୍ଣ୍ଣରେ ବେଦଧ୍ୱନି ବାଜନ୍ତେ ସେ ଆସି ବାମନରୂପୀ ନାରାୟଣଙ୍କ ନିକଟରେ ପହଞ୍ଚିଲେ । କହିଲେ, 'ହେ ଦ୍ୱିଜଶ୍ରେଷ୍ଠ ! ଆପଣ କ'ଣ ଚାହାଁନ୍ତି ?' ବାମନରୂପୀ ନାରାୟଣ କହିଲେ, 'ହେ ଧର୍ମାତ୍ମା ! ମୁଁ ଯାହା ଚାହୁଁଛି ଆପଣ ଦେବେତ ?' ତେବେ ତ୍ରିବାର ସତ୍ୟକରି ଶଙ୍ଖରେ ପାଣିଟୋପି ଦିଅନ୍ତୁ ।' ବଳି ଦାନପାଣି ଦେବାକୁ ପ୍ରସ୍ତୁତ ହେଲେ । ଗୁରୁ ଶୁକ୍ରାଚାର୍ଯ୍ୟ ଏ କଥା ଜାଣି ବଳିଙ୍କୁ ମନାକଲେ । କହିଲେ, 'ବଳି, ଏ ହେଉଛନ୍ତି କପଟୀ ନାରାୟଣ ଏହାଙ୍କ କଥାରେ ବିଶ୍ୱାସ ନାହିଁ ।' ବଳି ନାରାୟଣ ନାମ ଶୁଣି ଅତୀବ ଆନନ୍ଦିତ ହୋଇ ଗୁରୁଙ୍କ କଥା ନ ଶୁଣି ଶଙ୍ଖରେ ଦାନପାଣି ଦେବାକୁ ପ୍ରସ୍ତୁତ ହେଲେ । ଭାର୍ଗବ ଏ ଦାନ ଅବରୋଧ କରିବା ପାଇଁ ମାଛିଟିଏ ହୋଇ ଶଙ୍ଖ ମଧ୍ୟରେ ରହିଗଲେ । ନାରାୟଣ ଏକଥା ଜାଣି ବଳିଙ୍କୁ କହିଲେ, 'ତୁମ ଶଙ୍ଖରେ ମଇଳା ଅଛି । ତୁମେ ସେହିପରି ଧରିଥାଅ ମୁଁ ସଫାକରି ଦେଉଛି ।' ଏହା କହି କୁଶାଘାତ ଦ୍ୱାରା ଶୁକ୍ରଙ୍କ ଚକ୍ଷୁକୁ ଆଘାତ କରନ୍ତେ ତାଙ୍କର ଗୋଟିଏ ଚକ୍ଷୁ ନଷ୍ଟ ହୋଇଗଲା । ଶୁକ୍ର ଭୟରେ ଚାଲିଗଲେ । ଦାନପାଣି ଗ୍ରହଣ କରି ବାମନରୂପୀ ନାରାୟଣ ବଳିଙ୍କୁ ନିଜ ପାଦରେ ତିନି ପାଦ ଭୂମି ଦାନ ମାଗିଲେ । ବଳି କହିଲେ, 'ହେ ବ୍ରାହ୍ମଣ ! ଏ ସଚରାଚର ପୃଥିବୀ ମୋର । ତୁମ ଇଚ୍ଛା ଯେଉଁଠୁ ନେବ ତିନିପାଦ ଭୂମି ନେଇପାର । ନାରାୟଣ ବିରାଟ ରୂପଧରି ଗୋଟିଏ ପାଦରେ ସଚରାଚର ମାଡ଼ି ବସିଲେ । ଦ୍ୱିତୀୟ ପାଦରେ ଗ୍ରହ ନକ୍ଷତ୍ର ଇତ୍ୟାଦି ଗଗନମଣ୍ଡଳ ପୂରିଗଲା । ତୃତୀୟ ପାଦ ଭୂମି ମାଗିବାରେ ବଳି କହିଲେ, 'ଆପଣଙ୍କ ତୃତୀୟ ପାଦ ଦେଖାଅ । ମୁଁ ଭୂମି ଦେବି । ନାରାୟଣ ନିଜ ନାଭି ମଧ୍ୟରୁ ଆଉ ଗୋଟିଏ ପାଦ ସୃଷ୍ଟି କରନ୍ତେ ବଳି ନିଜର ଶିର ପାତି ଦେଲେ । ଭଗବାନ ବାମନ ତାର ମୁଣ୍ଡ ଉପରେ ପାଦ ଥୋଇ ତାକୁ ରସାତଳକୁ ଚାପିଦେଲେ ଏବଂ ବଳି ରାଜାଙ୍କର ଦ୍ୱାରୀ ରୂପରେ ନିଜେ ଲକ୍ଷ୍ମୀ ଓ ନାରାୟଣ ଜଗି ରହିଲେ ।

–ବାମନ ପୁରାଣ

## ଦଶମ ପଦ—

ବନ୍ଧୁ ! ଭୃଗୁ ବଂଶପର ପରଶୁଧାରଣ ।
ବାହୁକ ବାହୁ ସହସ୍ର ଦାରଣ କାରଣ ହେ ॥ ୧୦ ॥

କାନ୍ୟକୁବ୍ଜର ରଜା ଗାଧୀ ଓ ତାଙ୍କର ପତ୍ନୀ ସତ୍ୟବତୀ ଦୁଇ-ଝିଅ ରେଣୁକା ଓ ପଦ୍ମା । ରଜା ଦୁଇଝିଅଙ୍କୁ ବିବାହ କରଇ ଦେଲେ । ବଡ଼ଝିଅ ରେଣୁକା ମହର୍ଷି ଜମଦଗ୍ନିଙ୍କୁ ଓ ସାନଝିଅ ପଦ୍ମା ଅଜିଗର୍ତ୍ତଙ୍କୁ ବିବାହ କଲେ । କିଛିଦିନ ପରେ ସତ୍ୟବତୀ ବଡ଼ଝିଅ ଘରକୁ ଯାଇ ଜାମାତା ଜମଦଗ୍ନିଙ୍କୁ ପ୍ରାର୍ଥନା କରି କହିଲେ, 'ହେ ତପୋନିଧେ ! ମୁଁ ନିଃସନ୍ତାନ ଆପଣ ଦୟାବଶତଃ ମୋତେ ପୁତ୍ରଦାନ କରନ୍ତୁ ।' ଏହାଶୁଣି ଜମଦଗ୍ନି ଗୋଟିଏ ପୁତ୍ରେଷ୍ଟି ଯାଗ ଆରମ୍ଭ କଲେ । ଏପରି ଯଜ୍ଞ କଲେ ତା ମଧ୍ୟରୁ ଦୁଇଟି ଚରୁ ଆବିର୍ଭାବ ହେଲା । ଗୋଟିଏ ବ୍ରହ୍ମଚରୁ ଓ ଅନ୍ୟଟି କ୍ଷତ୍ରିୟଚରୁ । ଋଷି କ୍ଷତ୍ରିୟଚରୁଟି ଶାଶୁ ସତ୍ୟବତୀଙ୍କୁ ଓ ବ୍ରହ୍ମଚରୁଟି ପତ୍ନୀ ରେଣୁକାଙ୍କୁ ଦେଇ କହିଲେ, 'ତୁମେ ଉଭୟେ ସ୍ନାନସାରି ଶୁଦ୍ଧପୂତ ଭାବେ ଚରୁ ଭକ୍ଷଣ କରିବ ।' ସତ୍ୟବତୀ ଓ ରେଣୁକା ଚରୁ ରଖି ସ୍ନାନ କରିବାକୁ ଗଲେ । ସ୍ନାନ କଲବେଳେ ସତ୍ୟବତୀ ଭାବିଲେ ଋଷି ନିଜ ପତ୍ନୀଙ୍କୁ ଭଲ ଚରୁଟି ନିଶ୍ଚୟ ଦେଇଛନ୍ତି । ଏକଥା ଭାବି ସତ୍ୟବତୀ ତରତର ହୋଇ ସ୍ନାନକାର୍ଯ୍ୟ ସମାପନ କରି ଆଗରେ ଗାଧୋଇ ଆସିଲେ ଏବଂ ଚରୁ ବଦଳାଇ ନିଜେ ବ୍ରହ୍ମ ଚରୁଟି ଖାଇଦେଲେ । ପରେ ରେଣୁକା ଆସି କ୍ଷତ୍ରିୟ ଚରୁ ବୋଲି ଜାଣି ନ ପାରି ସେ ମଧ୍ୟ ଖାଇଦେଲେ । କିଛିଦିନ ଅତିବାହିତ ହେବାପରେ ଉଭୟେ ଅନ୍ତଃସତ୍ତ୍ୱା ହେଲେ । ଋଷି ଜମଦଗ୍ନି ଏ କଥା ଯୋଗବଳରେ ଜାଣି ପାରିଲେ । କିନ୍ତୁ ଉପାୟ ନାହିଁ । ସତ୍ୟବତୀଙ୍କ ଗର୍ଭରୁ ଜନ୍ମହେଲେ ରଜା ବିଶ୍ୱାମିତ୍ର । ସେ ବ୍ରହ୍ମଚରୁ ଅଂଶରୁ ଜାତ ହୋଇଥିବାରୁ କଠୋର ତପସ୍ୟା କରି ହେଲେ ବ୍ରହ୍ମର୍ଷି ଏବଂ ରେଣୁକାଙ୍କ ଗର୍ଭରୁ ଜନ୍ମ ହେଲେ ପର୍ଶୁରାମ । କିଛିଦିନ ପରେ ସହସ୍ରାର୍ଜ୍ଜୁନ ମୃଗୟାକୁ ଆସି ଜମଦଗ୍ନିଙ୍କ ଆଶ୍ରମରେ ପହଞ୍ଚିଲେ । ଜମଦଗ୍ନି ନିଜର କାମଧେନୁ ସହାୟତାରେ ରାଜା କାର୍ତ୍ତବୀର୍ଯ୍ୟଙ୍କୁ ଅଭିନନ୍ଦିତ କଲେ । ପରଦିନ

ବିଦାୟ ଦେବେ କାର୍ତ୍ତବୀର୍ଯ୍ୟ ଏ ଖବର ଜାଣି କାମଧେନୁଟିକୁ ଋଷିଙ୍କଠାରୁ କାମନା କଲେ । ଋଷି ମନାକରିବାରେ କାର୍ତ୍ତବୀର୍ଯ୍ୟ ଋଷିଙ୍କୁ ହତ୍ୟାକରି କାମଧେନୁକୁ ନେଇ ଚାଲିଗଲେ । ପରଶୁରାମ ଏକଥା ଜାଣି କଠୋର ତପସ୍ୟା ଦ୍ୱାରା ନାରାୟଣଙ୍କଠାରୁ କଳା ଗ୍ରହଣ କରି କାର୍ତ୍ତବୀର୍ଯ୍ୟଙ୍କୁ ବିନାଶ କଲେ ଏବଂ ପୃଥିବୀକୁ ଏକୋଇଶ ଥର ଅଭିଯାନ ଚଳାଇ କ୍ଷତ୍ରିୟ ମର୍ଦ୍ଦନ କରିଥିଲେ ।

—ଭୃଗୁପୁରାଣ ଓ
—ରାମାୟଣ

—○—

## ତୃତୀୟ ଛାନ୍ଦ

ଦ୍ୱାଦଶ ପଦ—

**ବାଣୀ ଯେ ଏପରି ଲାଙ୍ଗଳ ଅଗ୍ରେ ଜାତ ମଞ୍ଜୁଷେ ।**
**ବାଣିଜ୍ୟ ରତ୍ନ ସଂପୁଟକ ଲଭ୍ୟପରା ମଞ୍ଜୁଷେ ॥ ୧୨ ॥**

ପ୍ରଶ୍ନ–ଗୋଟିଏ ମଞ୍ଜୁଷା ମଧ୍ୟରୁ କନ୍ୟାଟିଏ କିପରି ଜାତ ହେଲା ? ଏହାର କାରଣ କ'ଣ ? ଅନେକ ପୁରାଣରେ ଅନେକ ମିମାଂସା ଅଛି । ଭାରତ ବର୍ଷର ବିଭିନ୍ନ ପ୍ରାନ୍ତୀୟ ଭାଷାରେ ପୁରାଣ କିମ୍ବଦନ୍ତୀଗୁଡ଼ିକ ପ୍ରତ୍ୟେକ ସ୍ୱତନ୍ତ୍ର ଯୁକ୍ତି ଉପରେ ପ୍ରତିଷ୍ଠିତ । ତନ୍ମଧ୍ୟରୁ ଏହା ଗୋଟିଏ ସୂଚନା ।

ଜୟ ଓ ବିଜୟଙ୍କୁ ଲକ୍ଷ୍ମୀ ଅଭିଶାପ ଦେବାରେ ନାରାୟଣ ଲକ୍ଷ୍ମୀଙ୍କୁ ବର୍ଜ୍ଜନ କଲେ । ଏହା ଶୁଣି ଲକ୍ଷ୍ମୀ ମନଦୁଃଖରେ ଗହନବନ ମଧ୍ୟରେ ବେଦମତୀ ରୂପଧରି ନାରାୟଣଙ୍କୁ ପାଇବା ଉଦ୍ଦେଶ୍ୟରେ ତପସ୍ୟା କରିବାକୁ ବସିଲେ । କିଛିକାଳ ପରେ ଲଙ୍କାରେ ଦିନେ ମନ୍ଦୋଦରୀ

ବସିଛନ୍ତି । ନାରଦ ଆସି ପହଞ୍ଚିଲେ । ପଚାରିଲେ, 'ନାତୁଣୀ ! ତୁ କାହିଁକି ମନଦୁଃଖ କରୁଛୁ ?' ମନ୍ଦୋଦରୀ କହିଲେ, 'ଜେଜେ ! ତୁମେ ତ୍ରିକାଳଜ୍ଞ । ତୁମକୁ କ'ଣ ଅଜଣା ଅଛି ? ମୋର ଗୋଟିଏ ବୋଲି ପୁଅ ମେଘନାଦ । ଆଜି ତୁମ ନାତି ତାକୁ ସ୍ୱର୍ଗକୁ ପଠାଇଛନ୍ତି ଇନ୍ଦ୍ରଙ୍କ ସହିତ ଯୁଦ୍ଧ କରିବାକୁ । ଯୁଦ୍ଧରେ ଜୟ, ପରାଜୟ ଲାଗିରହିଛି । କେତେବେଳେ ଯଦି ମୋ ପୁତ୍ରର ଦୁର୍ଭାଗ୍ୟ ଘଟିବ ମୁଁ ନିଃସନ୍ତାନ ହୋଇଯିବି । ଏହି କଥା ମନେ ପଡ଼ିବାରୁ ଦୁଃଖ ଲାଗୁଛି । ମୋର ଯଦି ଆଉ ଗୋଟିଏ ମେଘନାଦ ପରି ବୀର ପୁଅ ଥାଆନ୍ତା କୌଣସି ଚିନ୍ତା ନ ଥିଲା ।' ଏକଥା ଶୁଣି ନାରଦ ଧ୍ୟାନକରି କହିଲେ, 'ନାତୁଣୀ ! ତୁ ଆସନ୍ତା ମାଘମାସ ଶୁକ୍ଳପକ୍ଷ ସପ୍ତମୀ ତିଥିରେ ତୋର ସ୍ୱାମୀଙ୍କୁ ନେଇ ବଦ୍ରିକା ବନରେ ଏକାନ୍ତ ବିହାର କର । ତେବେ ତୋର ଏପରି ଗୋଟିଏ ପୁତ୍ର ହେବ ସୃଷ୍ଟିର କୌଣସି ଶକ୍ତି ତାର ସମକକ୍ଷ ହୋଇ ପାରିବ ନାହିଁ ।' ଏକଥା ଶୁଣି ମନ୍ଦୋଦରୀ ରାବଣଙ୍କୁ କହିଲେ । ଠିକ୍ ଦିନ ଉଭୟେ ଗୋଟିଏ ସୁବର୍ଣ୍ଣ ରଥରେ ବସି ବଦ୍ରିକା ଅଭିମୁଖେ ଯାତ୍ରାକଲେ ।

ଯାଉଁ ଯାଉଁ ପଥଭ୍ରଷ୍ଟ ହୋଇ ରାବଣ କହିଲେ, 'ପ୍ରିୟେ, ଏଠାରୁ ଆଗକୁ ରଥ ଯିବାପାଇଁ ରାସ୍ତା ନାହିଁ । କେଉଁଠି ଆମେ ବଦ୍ରିକା ବାଟଟି ଛାଡ଼ି ଦେଲେ । ତୁମେ ଏହି ରଥରେ ବସିଥାଅ । ମୁଁ ଟିକିଏ ଦେଖୁଛି ।' ଏତିକି କହି ରାବଣ ପଛକୁ ଫେରିଲେ । ମନ୍ଦୋଦରୀ ସେ ଭୀଷଣ ଜଙ୍ଗଲ ମଧ୍ୟରେ ଏକାକିନୀ ରହିବାକୁ ଭୟକରି ରାବଣର ପଛେ ପଛେ ଆସୁଛନ୍ତି । ରାବଣ କିଛିବାଟ ଫେରି ଦେଖିଲେ ଗୋଟିଏ ଅନିନ୍ଦ୍ୟା ସୁନ୍ଦରୀ ସ୍ତ୍ରୀ ବସି ତପସ୍ୟା କରୁଛି । ରାବଣ ଭାବିଲେ, 'ଏ ନିକାଞ୍ଚନ ବନ ମଧ୍ୟରେ ମୋ ପରି ବୀରର ଭୁତ୍କମ୍ପ ହେଉଛି ।' ଏ କିଏ ସେ ? ଜାଣିବା ପାଇଁ ନିକଟକୁ ଯାଇ ପଚାରିଲେ, 'ଭଦ୍ରେ ! ତୁମେ କିଏ ? ଏଠାରେ କାହିଁକି ତପସ୍ୟା କରୁଛ ।' ସମାଧିସ୍ଥା ରମଣୀ କୌଣସି ଉତ୍ତର ନ ଦେବାରୁ ରାବଣ ରାଗିଯାଇ ନିଜ ବାହୁଦ୍ୱାରା ରମଣୀକୁ ଠେଲିଦେଲା । ଯୋଗଭ୍ରଷ୍ଟା ନାରୀ ଉଦ୍‌ବିଗ୍ନ ହୋଇ କହିଲେ, 'ରେ ଦୁରାଚାର ! ମୁଁ ବେଦମତୀ । ପୁରୁଷ ଅଙ୍ଗ

ନାଶ ନ କରି ନାରାୟଣଙ୍କୁ ପାଇବା ଥିଲା ମୋର ସଙ୍କଳ୍ପ । ତୁ ତାହା ନଷ୍ଟକରି ଦେଲୁ । ଏଣୁ ମୁଁ ଅଭିଶାପ ଦେଉଛି–ଯେଉଁ ଶରୀର ଧରି ତୁ ମୋର ତପସ୍ୟା ନଷ୍ଟ କରିଛୁ ମୁଁ ତୋର ସେହି ଶରୀରରୁ ଜାତ ହୋଇ ତୋର ବଂଶ ନିପାତ କରିବି ।' ଏପରି ଅଭିଶାପ ବାଣୀ ପୁଷ୍ପ ରଥରେ ଥାଇ ମନ୍ଦୋଦରୀ ଶୁଣି ପାରିଲେ । ସତୀ ନାରୀର ଅଭିଶାପ ଅଖଣ୍ଡ । ଏକଥା ଜାଣି ଆଉ ବଦ୍ରିକା ନ ଯାଇ ରାବଣଙ୍କୁ ବୁଝାଇ ଲଙ୍କାକୁ ଫେରି ଆସିଲେ । କିଛିଦିନ ପରେ ମନ୍ଦୋଦରୀ ହେଲେ ଅନ୍ତଃସତ୍ତ୍ୱା । ପ୍ରସବ ସମୟ ସନ୍ନିକଟ ଜାଣି ରାବଣ ପ୍ରସୂତି ଭବନରେ ମନ୍ଦୋଦରୀକୁ ରଖାଇ ଧାଇ ନିଯୁକ୍ତି କଲେ । ବୈଦ୍ୟ ଅଶ୍ୱିନୀକୁମାର ଓ ଧାଇ ହେଉଛନ୍ତି ସ୍ୱର୍ଗପୁରର ଅପ୍‌ସରାବୃନ୍ଦ । ଏଣେ ରାବଣ ସମସ୍ତ ବୁଦ୍ଧିଜିବୀମାନଙ୍କୁ ନେଇ ସଭାରଚନା କରିବସିଛନ୍ତି । ଠିକ୍ ମନ୍ଦୋଦରୀଙ୍କର ପ୍ରସବ ସମୟରେ ଲଙ୍କାପୁରରେ ଭୂମିକମ୍ପ ହେଲା । ସମସ୍ତେ ଅତିଷ୍ଠ ହୋଇ ପଡ଼ିଲେ । କିଛି ସମୟପରେ ପୃଥିବୀ ସ୍ଥିର ହେଲା ।ଏହା ପରେ ରାବଣ ଏହାର କାରଣ ପଚାରିବାରେ, ବ୍ରହ୍ମା, ବୃହସ୍ପତି ଇତ୍ୟାଦି ପଣ୍ଡିତବର୍ଗ ଗଣନାକରି କହିଲେ, 'ଲଙ୍କେଶ ! ତୁମର ଗୋଟିଏ କନ୍ୟା ଜନ୍ମହେଲା । ସେ କନ୍ୟା ହେବ ଲଙ୍କାପୁରର ଧ୍ୱଂସକାରିଣୀ । ଏହାଶୁଣି ରାବଣ ଚିନ୍ତାକଲା–

ମୂଳୁ ମାଇଲେ ଯିବସରି,
ଦେବଙ୍କ ସଙ୍ଗେ କିମ୍ପା କଳି ।

ଏହା ବିଚାରି ରାରିଜଣ ଦୂତଙ୍କୁ ଆଦେଶ ଦେଲା, 'ତୁମେ ବର୍ତ୍ତମାନ ସେ ନବଜାତ ଶିଶୁଟିକୁ ନେଇ ଭାରତ ବର୍ଷର କୌଣସି ଉପାନ୍ତ ଅଞ୍ଚଳରେ ମାରି ପକାଇ ଦିଅ ।

ରାବଣ କଥାଶୁଣି ଦୂତମାନେ ଯାଇ ପ୍ରସୂତି ଭବନରେ ପହଞ୍ଚିଲେ । ମନ୍ଦୋଦରୀ ପ୍ରସବ କରି ମୂର୍ଚ୍ଛିତା ଅବସ୍ଥାରେ ପଡ଼ିରହିଛନ୍ତି । ଦୂତମାନେ ଯାଇ ଧାଈମାନଙ୍କୁ କହିଲେ, 'ରଜାଙ୍କ ଆଦେଶ, ସେ ନବଜାତ ଶିଶୁଟିକୁ ଦିଅ । ଆମେ ତାକୁ ମାରି ବାକ୍ସରେ ଭର୍ତ୍ତିକରି ଫୋପାଡ଼ି ଦେବୁ । ଧାଈଟି ଏକଥା ଶୁଣି ବିଚାର କଲା, 'ଏପରି ସର୍ବଲକ୍ଷଣସମ୍ପନ୍ନା କନ୍ୟାଟିକୁ

ନୃଶଂସ ମାରିଦେବେ ଆମେ କିପରି ଏହାକୁ ରକ୍ଷାକରିବା ?' ଏହାଭାବି କହିଲେ, 'ତୁମେ ବାକ୍ସ ସଜକର । ଆମେ କନ୍ୟାଟିକୁ ଆଣୁଛୁ ।' ଦୂତମାନେ ବାକ୍ସଟିଏ ସଜକରି ଆଣିଲେ । ଏଣେ ଧାଇମାନେ ଅଶ୍ୱିନୀକୁମାରଙ୍କ ପ୍ରଦତ୍ତ ମୃତସଞ୍ଜିବନୀ ବଟୀ ମାଳକରି ସେ କନ୍ୟା ବେକରେ ପିନ୍ଧାଇ ଦେଲେ । ଯେପର୍ଯ୍ୟନ୍ତ ସେ ମାଳଟି ବେକରେ ଥିବ ତାର କୌଣସି କ୍ଷତି ହେବନାହିଁ । କନ୍ୟାଟିକୁ ଆଣି ଦୂତମାନଙ୍କୁ ଦେଇଦେଲେ । ଦୂତମାନେ ବାକ୍ସ ମଧ୍ୟରେ ଭରି ତାଲା ପକାଇ ବାକ୍ସଟିକୁ ନେଇ ଭରତ ବର୍ଷର ମିଥିଳା ନିକଟ ଜନପଦ ନାମକ ଜଙ୍ଗଲ ମଧ୍ୟରେ ପୋତି ଦେଇ ଚାଲି ଆସିଲେ । କିଛିଦିନ ପରେ ଜଣେ ପ୍ରଜା ଜମି ଚାଷକରିବାରେ ବାକ୍ସଟି ବାହାରିଲା । ସେ ଭୂଗର୍ଭସ୍ଥ ଧନ ରାଷ୍ଟ୍ରର ବୋଲି ବିଚାରକରି ଜନକଙ୍କ ପାଖରେ ଆଣି ବାକ୍ସଟି ରଖି ସବୁ ସମାଚାର ଜଣାଇଲା । ଜନକ ସଭାସଦ୍‌ଙ୍କୁ ପଚାରିଲେ, 'ଏ ପ୍ରାପ୍ତ ଧନ କ'ଣ କରାଯିବ ?' ପଣ୍ଡିତ ବର୍ଗ କହିଲେ, 'ଏ ରାଷ୍ଟ୍ରର ଧନ । ରାଷ୍ଟ୍ରର କୌଣସି ଉନ୍ନତିମୂଳକ କାର୍ଯ୍ୟରେ ବ୍ୟବହାର ହେବା ବିଧେୟ । ବର୍ତ୍ତମାନ ବର୍ଷାର ଆଗମନ ସମୟ । ଏହାକୁ ସୁମାରିକରି ଆପଣଙ୍କ ଭଣ୍ଡାରରେ ରଖାଯାଉ ବର୍ଷା ପରେ ଯାହାକିଛି କରାଯିବ ।' ଏହା ଚିନ୍ତାକରି ବାକ୍ସଟିକୁ ଖୋଲିବାରେ କନ୍ୟାଟିଏ ବାହାରିଲା । ସମସ୍ତେ ଆଶ୍ଚର୍ଯ୍ୟ ହେଲେ ଏବଂ କହିଲେ, 'ଏ ମିଥିଳା ରାଷ୍ଟ୍ରର ସମ୍ପତ୍ତି । ଏଣୁ ଏ କନ୍ୟା ନାମ ମୈଥିଳୀ ଏବଂ ଜନକ ଏହାକୁ ପାଳନ କରିବେ । ସୁତରାଂ ଏହା ନାମ ଜାନକୀ । ବିଦେହରୁ ଜାତ ହୋଇଥିବାରୁ ବୈଦେହୀ । ପୃଥିବୀ ଗର୍ଭରୁ ଜାତ ପାର୍ଥିବୀ । ଏହାର ଦେହରୁ ସୁବାସ ଜନ୍ମୁଛି, ତେଣୁ ଯୋଜନଗନ୍ଧା ଏବଂ ସୀତାରୁ ବାହାରିଥିବାରୁ ଏହା ନାମ ସୀତା ।' ଏହିପରି ଛଅ ନାମ ଦେଇ ସୀତାଙ୍କୁ ଜନକ ପାଳନ କଲେ ।

—ଜୈନ ରାମାୟଣ

# ଚତୁର୍ଥ ଛାନ୍ଦ

## ଦ୍ୱିତୀୟ ପଦ -

ବୃଷ୍ଟିହୀନ ଦ୍ୱାଦଶ ବରଷ ଚମ୍ପାବତୀ,
ବଡ଼ ଚିନ୍ତା ଲଭେ ଲୋମପାଦ ନରପତି ।

ଚମ୍ପାବତୀ ରାଜ୍ୟ ବୃଷ୍ଟିହୀନ ହେଲା କାହିଁକି ?

ଚମ୍ପାବତୀ ନଗ୍ରର ରାଜା ଲୋମପାଦ ବଡ଼ ଧାର୍ମିକ ଥିଲେ । ଦୈନନ୍ଦିନ ସେ ଗୋଟିଏ ଗାଈକୁ ସୁବର୍ଣ୍ଣ ଆଭରଣ କରି ଦାନ ଦିଅନ୍ତି । ଏହିପରି ଦିନେ ଜଣେ ବ୍ରାହ୍ମଣକୁ ଗୋଟିଏ ଗାଈ ଦାନ ଦେଲେ । କିନ୍ତୁ ଉକ୍ତଦିନ ଗାଈଟି ବ୍ରାହ୍ମଣ ଘରୁ ପଳାଇ ଆସି ପୁନରାୟ ରାଜାଙ୍କ ଗାଈ ଗୋଠରେ ମିଶିଗଲା । ରାଜା ପରଦିନ ପ୍ରଭାତରେ ସେହି ଗାଈଟିକୁ ଅନ୍ୟ ଏକ ବ୍ରାହ୍ମଣକୁ ଦାନ ଦେଇଦେଲେ । ଦ୍ୱିତୀୟ ବ୍ରାହ୍ମଣ ଗାଈଟିକୁ ନେଇ ଘରକୁ ଫେରୁଛନ୍ତି, ଏ ସମୟରେ ପ୍ରଥମ ଦିନ ଦାନ ଗ୍ରହଣ କରିଥିବା ବ୍ରାହ୍ମଣ ଆସି ଗାଈଟି ମୋର ବୋଲି ଦାବି କଲେ । ଉଭୟେ ଧରାଧରି ହୋଇ ଆସି ରାଜାଙ୍କ ପାଖରେ ପହଞ୍ଚିଲେ । ରାଜା ବିଚାର କରି ଦେଖିଲେ ପ୍ରଥମେ ସେ ଦାନ ଦେଇଥିବା ଗାଈଟି ଭୁଲ୍‌ବଶତଃ ଦ୍ୱିତୀୟବାର ଦାନ ଦେଇଛନ୍ତି । ତେଣୁ କହିଲେ, 'ହେ ବିପ୍ରବର ! ଏ ଗାଈଟି ପରିବର୍ତ୍ତେ ଅନ୍ୟ ଗାଈ ଦେଉଛି ନେଇଯାଅ ।' କିନ୍ତୁ ଜିଦ୍‌ଖୋର ବ୍ରାହ୍ମଣଦ୍ୱୟ କେହି ରାଜି ହେଲେନାହିଁ । ରାଜା ଶେଷକୁ ଗୋଟିଏ ଗାଈ ପରିବର୍ତ୍ତେ ଶହେ ଗାଈ ଦେବା ପାଇଁ ପ୍ରସ୍ତୁତ ହେଲେ । କିନ୍ତୁ ବ୍ରାହ୍ମଣଦ୍ୱୟ ନିଜ ନିଜର ଜିଦ୍ ରଖି ରାଜି ନ ହେବାରୁ ରାଜା ନିରୁପାୟ ହୋଇ ଟିକେ କଟୂକ୍ତି ପ୍ରୟୋଗ କଲେ । ଏହା ଶୁଣି ବ୍ରାହ୍ମଣଦ୍ୱୟ ରାଗିଯାଇ ଅଭିଶାପ ଦେଲେ ଯେ, 'ତୋ ରାଜ୍ୟରେ ବାରବର୍ଷ ଅନାବୃଷ୍ଟି ହେଉ । ଏହି ଅଭିଶାପ ନିଶ୍ଚୟ ଭୋଗ କର ।'

— ରାମାୟଣ

**

## ତୃତୀୟ ପଦ –

ବର୍ଷା କରିଣ ଋଷ୍ୟଶୃଙ୍ଗ ଆଗମନେ,
ବହ୍ମକ୍ଷାଦ ଝର ଚପେଳା କାନ୍ତାଙ୍ଗ ସମାନେ ଯେ ।

ଋଷ୍ୟଶୃଙ୍ଗ ଆସିଲେ ବର୍ଷା ହେବାର କାରଣ –

ଦିନେ ମହର୍ଷି ବିଭଣ୍ଡକ ଗଙ୍ଗା ନଦୀରେ ସ୍ନାନ କରୁଥିଲେ । ଏ ସମୟରେ ମେନକା ଅପ୍ସରା ମର୍ତ୍ତ୍ୟଭୁବନରୁ ଇନ୍ଦ୍ରଙ୍କର ଅଭିଶାପମୁକ୍ତ ହୋଇ ଫେରୁଛି । ଋଷିଶ୍ରେଷ୍ଠ ସେ ଅପ୍ସରା ଉପରେ ମୋହିତ ହୋଇ ସେହି ଜଳ ମଧ୍ୟରେ ବ୍ରହ୍ମତ୍ୟାଗ କଲେ । ସେ ଅକ୍ଷୟ ବ୍ରହ୍ମ ଭସି ଭସି ଯାଉଥାଏ । ଯୋଗକୁ ଗୋଟିଏ ମୃଗୁଣୀ ପର୍ଣ୍ଣ ପିଇବା ବେଳେ ସେ ବ୍ରହ୍ମକୁ ଖାଇଦେଲା । ମୃଗୁଣୀଟି ଅକ୍ଷୟବ୍ରହ୍ମ ଗର୍ଭସ୍ଥ କରନ୍ତେ ଗର୍ଭବତୀ ହୋଇ ସନ୍ତାନଟିଏ ପ୍ରସବ କରି ଦେହତ୍ୟାଗ କଲା । ପୁତ୍ରଟି ମନୁଷ୍ୟ ଶରୀର ଏବଂ ମୃଗର ଶିଙ୍ଗ ଧାରଣ କରି ଜନ୍ମ ହୋଇ କ୍ରନ୍ଦନ କରୁଥାଏ । ଏ ସମୟରେ ବିଭଣ୍ଡକ ବାଳକର କ୍ରନ୍ଦନ ଧ୍ୱନି ଶୁଣି ନିକଟକୁ ଯାଇ ଚିନ୍ତାକଲେ ଏ ବାଳକଟି କାହାର ? ଦୈବବାଣୀ ହେଲା, 'ବିଭଣ୍ଡକ ! ଏ ହେଉଛି ତୁମର ପୁତ୍ର । ତୁମେ ନେଇ ଯତ୍ନରେ ପାଳନ କର । ଏହାଦ୍ୱାରା ଦେବକାର୍ଯ୍ୟ ସାଧନ ହେବ ।' ବିଭଣ୍ଡକ ପୁତ୍ରଟିକୁ ଆଣି ଆଶ୍ରମରେ ରଖିଲେ ଏବଂ ପରଦିନ ତପସ୍ୟା କରିବା ପାଇଁ ଗଲିଗଲେ । ସନ୍ଧ୍ୟାକୁ ଆସି ଦେଖନ୍ତି, ନିଃସହାୟ ଭାବେ ପିଲାଟି କାନ୍ଦୁଛି । ଆଶ୍ରମରେ ତ କୌଣସି ସ୍ତ୍ରୀ ଲୋକ ପିଲାଟିକୁ ପାଳିବା ପାଇଁ ନାହିଁ । କ'ଣ କରିବେ, କିଛି ଚିନ୍ତା କରି ନପାରି ବିଭଣ୍ଡକ ବାଳକକୁ ଗୋଟିଏ ବର ଦେଲେ, 'ହେ କୁମର ! ତୁ ବର୍ତ୍ତମାନ ମାତା ବିଚ୍ଛେଦରେ କ୍ଷୁଧାତୁର । ଏଣୁ ମୁଁ ତୋତେ ଏହି ବର ଦେଉଛି ତୁ ଯେତେବେଳେ ଇଚ୍ଛା କରିବୁ ଇନ୍ଦ୍ର ତୋ ମୁଖରେ ଅମୃତ ବୃଷ୍ଟି କରିବେ ।' ଏକଥା ବ୍ରାହ୍ମଣମାନେ ଜାଣିଥିବାରୁ ଲୋମପାଦଙ୍କୁ କହିଲେ ।

– ରାମାୟଣ

୯୧ ପଦ –

ନଗ୍ନଙ୍କା ସୁନ୍ଦରୀ ଚେତନ ତବ ସୁତା,
ସ୍ୱାହା ହଜାଇ ଯଦ୍ୟପି ହେବେ ସୁତ ଦାତା ଯେ ।

ଶାନ୍ତାକନ୍ୟା କିଏ ?

ପୂର୍ବରୁ ଦଶରଥ କୋଶଳ ରାଜକନ୍ୟା କୌଶଲ୍ୟାଙ୍କ ପାଣିଗ୍ରହଣ କରିଥିଲେ । କୌଶଲ୍ୟାଙ୍କ ଗର୍ଭରୁ ଗୋଟିଏ ଝିଅ ଜନ୍ମ ହେଲା । ତା'ର ନାମ ଶାନ୍ତା । ଦଶରଥ ଓ ଲୋମପାଦ ଦୁଇ ମିତ୍ର । ଉଭୟଙ୍କର ସନ୍ତାନ ନ ଥିବାରୁ ମିତ୍ରସୁତା ଶାନ୍ତା ଲୋମପାଦଙ୍କ ଘରେ ରହୁଥିଲେ ।

— ରାମାୟଣ



ପଞ୍ଚମ ଛାନ୍ଦ

୧୧ଶ ପଦ—

ତଭାଜି ଉଜ୍ଜ୍ୱଳ ଶକ୍ତିମନ୍ତରେ ସେହ୍ନ,
ବହ୍ନାରୀ ହୋଇ କ୍ରମଶେ ଷଷ୍ଠୀରେ ସ୍ନେହୀ ।

ତାରକାସୁରର ଉପଦ୍ରବରେ ଦେବତାମାନେ ଅସ୍ଥିର ହେଲେ । ଶିବଙ୍କ ଔରସଜାତ ସନ୍ତାନ ଦ୍ୱାରା ତାରକା ମରିବ ଏ ବର ସେ ପାଇଛି । ସତୀ ଦକ୍ଷଯଜ୍ଞରେ ଦେହତ୍ୟାଗ କରି ହିମାଳୟରେ ପାର୍ବତୀରୂପେ ଜନ୍ମ ଗ୍ରହଣ କରି ଶିବଙ୍କୁ ପାଇବା ପାଇଁ କଠୋର ତପସ୍ୟାମଗ୍ନା । ଶିବ

ସତୀଙ୍କୁ ହରଗଇ ତପସ୍ୟାରତ । ଏପରି ସ୍ଥଳେ ଦେବତାମାନେ ନିରୁପାୟ ହୋଇ କନ୍ଦର୍ପଙ୍କୁ ଜଣାଇଲେ । କନ୍ଦର୍ପ ଗର୍ବର ସହ ସଖା ବସନ୍ତଙ୍କ ସହିତ ଶିବଙ୍କ ତପସ୍ୟା ସ୍ଥାନରେ ପହଞ୍ଚି ଶିବଙ୍କର ତପସ୍ୟାଭଗ୍ନ କରିବାକୁ ଉଦ୍‌ଯୋଗ କରି ଯେତେବେଳେ ପଞ୍ଚବାଣ ପ୍ରୟୋଗ କଲେ ଶିବଙ୍କର ତପସ୍ୟା ଭଗ୍ନ ହୋଇ ବ୍ରହ୍ମ ସ୍ଖଳନ ହେଲା । ସେ ବ୍ରହ୍ମ ପୃଥିବୀରେ ପଡ଼ିବା ଯୋଗ୍ ପୃଥିବୀ ସହିପାରିଲେ ନାହିଁ । ତା'ପରେ ଅଗ୍ନିଙ୍କୁ ଅର୍ପଣ କରଗଲା । ଅଗ୍ନି ମଧ୍ୟ ସହ୍ୟ କରିପାରିଲେ ନାହିଁ । ଗଙ୍ଗାଙ୍କୁ ଦିଆଗଲା । ଗଙ୍ଗା ମଧ୍ୟ ସହିପାରିଲେ ନାହିଁ । ପରେ ଷଡ଼କୃତିକାଙ୍କୁ ଦିଅନ୍ତେ ସେମାନେ ଛ'ଭଗ କରି ବାଣ୍ଟି ଭକ୍ଷଣ କରିନେଲେ । କିନ୍ତୁ ଅକ୍ଷୟ ବ୍ରହ୍ମ ଛଅଟି ସନ୍ତାନ ହୋଇ ଷଡ଼କୃତିକାଙ୍କ ଗର୍ଭରୁ ଜନ୍ମି ହେଲେ । ସେ ଛଅ ପୁଅଙ୍କୁ ଷଣବନ ମଧ୍ୟରେ ଶୁଆଇ ଦେବାରେ ସେମାନେ ଏକାଠି ହୋଇ ଗୋଟିଏ ରୂପ ଧାରଣ କଲେ ଏବଂ ତାହା ଷଡ଼ବଦନ ଓ ବାରଭୁଜ ହୋଇଗଲା । ତେଣୁ ତା'ର ନାମ ସ୍କନ୍ଦକୁମାର, କାର୍ତ୍ତିକେୟ, ବାହୁଳେୟ; ଅଗ୍ନିଭୂ, ଗଙ୍ଗାଭୂ ଇତ୍ୟାଦି ରଖାଗଲା । ସେ କୁମାର ଦେବ ସେନାପତି ହୋଇ ସେନାନୀ ନାମ ଧାରଣ କରି ତାରକାସୁରକୁ ବିନାଶ କଲେ ।

— ଶିବ ପୁରଣ, କୁମାରସମ୍ଭବ, ଦେବୀ ଭଗବତ

* * *

୭୭/୭୭ ପଦ—

ବଂଶଏକ ବଦନେ ଦେଲା ଶୟନ କରି,
ବଟପତ୍ର ପୁଟେ ବାଳମୁକୁନ୍ଦ ପରି ।
ବଢ଼ାନ୍ତେ ଯେ ଦଶରଥ ଶ୍ରୀଲନେ କର,
ବାହୁ ଉଦ୍ଧେ ମାର୍କଣ୍ଡେୟ ଥିବା ପ୍ରକାର ।

ଯେତେବେଳେ ବ୍ରହ୍ମ ପ୍ରଳୟ ହୋଇଥିଲା ସମସ୍ତ ବିଶ୍ୱ ଜଳାର୍ଣ୍ଣବ ହେଲା । ଭଗବାନ ନାରାୟଣ ଗୋଟିଏ ବାଳକମୂର୍ତ୍ତି ଧରି ବଟପତ୍ରଉପରେ

ରହି ପ୍ରଳୟ ଜଳରେ ଭାସୁଥିଲେ । ଚିରଞ୍ଜୀବୀ ମହର୍ଷି ମାର୍କଣ୍ଡେୟ ଭକ୍ତ ଜଳରେ ହନ୍ତସନ୍ତ ହୋଇ 'ହେ ନାରାୟଣ ! ଉଦ୍ଧାର କର' ବୋଲି ଊର୍ଦ୍ଧ୍ୱକୁ କର ଟେକି ଡାକ ଦିଅନ୍ତେ ଭଗବାନ ନାରାୟଣ ନିଜ କର ପ୍ରସାର କରି ମାର୍କଣ୍ଡେୟଙ୍କୁ ପ୍ରଳୟ ଜଳ ମଧ୍ୟରୁ ଉଦ୍ଧାର କରିଥିଲେ ।

— ମାର୍କଣ୍ଡେୟ ପୁରାଣ

* *
*

୮୧ ପଦ—

ବଡ ବିଧାନ ସମସ୍ତ ଭିନ୍ନେ ଦେହ ଛନ୍ଦ,
ବଦ୍ରିକାରେ ନର ନାରାୟଣ ଯା ଲୀଳା ।

ସହସ୍ର କବଚ ନାମକ ଦୈତ୍ୟ ବର ପାଇଛି— 'ତା' ସହିତ ଯୁଦ୍ଧରେ କେହି ସକ୍ଷମ ହେବେ ନାହିଁ ।' ଯେ ସହସ୍ର ବର୍ଷ ତପସ୍ୟା କରି ସହସ୍ର ବର୍ଷ ଯୁଦ୍ଧ କରିବ ତା ଦେହରେ ଥିବା ଗୋଟିଏ କବଚ କାଟିବାକୁ ସେହି ସକ୍ଷମ ହୋଇପାରିବ । ଏପରି ସହସ୍ର କବଚ ଯେଉଁ ବୀର କାଟି ଦେଇ ପାରିବ ତା ହସ୍ତରେ ତା'ର ହେବ ମୃତ୍ୟୁ । ଏପରି ପ୍ରବଳ ବର ପାଇଥିବା ଦୁର୍ଦ୍ଦାନ୍ତ ରାକ୍ଷସର ଉପଦ୍ରବ ସହି ନପାରି ଦେବତାମାନେ ନାରାୟଣଙ୍କୁ ପ୍ରାର୍ଥନା କରନ୍ତେ, ଭଗବାନ ନିଜେ ଦୁଇମୂର୍ତ୍ତି ହୋଇ ନରନାରାୟଣ ନାମ ଧାରଣ କରି ବଦ୍ରିକା ବନରେ ବସି କଠୋର ତପସ୍ୟା କଲେ । ଏକ-ହଜାର ବର୍ଷ ପୂର୍ଣ୍ଣ ହୁଅନ୍ତେ ନରନାରାୟଣ ବିଚାର କଲେ — କିଏ ବର୍ତ୍ତମାନ ରାକ୍ଷସ ସହ ଯୁଦ୍ଧ କରିବ । ନର କହିଲେ, 'ହେ ନାରାୟଣ, ତମେ ପ୍ରଥମେ ଯୁଦ୍ଧକୁ ଯାଅ ।' ନାରାୟଣ ଯୁଦ୍ଧକୁ ସଜ ହୋଇ ସହସ୍ର କବଚ ସହିତ ସହସ୍ର ବର୍ଷ ଯୁଦ୍ଧ କରି ଗୋଟିଏ କବଚ କାଟିଦେଲେ । ତପସ୍ୟାକାଳ ପୂର୍ଣ୍ଣ ହୋଇଗଲା । ସେ ଫେରି ଆସି ପୁନରାୟ ତପସ୍ୟା କଲେ ଏବଂ ଇତ୍ୟବସରରେ ନର ଯାଇ ଯୁଦ୍ଧ କଲେ । ନରଙ୍କର ଏକସହସ୍ର ବର୍ଷ ଯୁଦ୍ଧ ପରେ ଗୋଟିଏ କବଚ କ ଟି ଦେଲେ... [illegible]

ତପସ୍ୟା ସହସ୍ରବର୍ଷ ପୂର୍ଣ୍ଣ ହେଉଥିଲା । ସେ ଯୁଦ୍ଧକୁ ଅନୁସର ହେଲେ । ଏପରି ସହସ୍ରକବଚ ସହ ଯୁଦ୍ଧ କରି ନରନାରାୟଣ ସହସ୍ରକବଚକୁ ମାରିଥିଲେ ।

— ହରିବଂଶ

* *
*

୮୩ ପଦ—

ଭାଳଭାତିନୋଳ ଗ୍ରୀବକୁ ପ୍ରକାଶେ ଉଦ୍ଧ୍ରିଂ
ହୟଗ୍ରୀବ ଦେଖାଉଥିଲେ ପୂର୍ବରେ ଯେହ୍ନେ ।

ପୁରାଣରେ ପ୍ରମାଣ ଅଛି ହୟଗ୍ରୀବ ନାମକ ରାକ୍ଷସ ବର ପାଇଛି— 'ଯେଉଁ ବୀର ତା'ର ସ୍ୱରୂପ ଧାରଣ କରିବ, ତା' ହସ୍ତରେ ହେବ ତା'ର ମୃତ୍ୟୁ ।' ଏପରି ବର ପାଇ ରାକ୍ଷସରାଜ ହୟଗ୍ରୀବ ଦେବତାମାନଙ୍କ ସହିତ ଯୁଦ୍ଧ କରିବାରେ ତତ୍ପର ହେଲା । ନାରାୟଣ ଦେବତାମାନଙ୍କ ସହ ପକ୍ଷ ହୋଇ ରାକ୍ଷସ ସହିତ ଯୁଗ ଯୁଗ ଧରି ଯୁଦ୍ଧ କରି ମଧ୍ୟ ଜୟ କରିପାରିଲେ ନାହିଁ । ଶେଷରେ କ୍ଳାନ୍ତ ହୋଇ ସାରଙ୍ଗ ଧନୁଗୁଣଯୁକ୍ତ ଥିବା ଅବସ୍ଥାରେ ପୃଥିବୀ ବକ୍ଷରେ ବସାଇ ଦେଇ ତା'ର କଣ୍ଠଦେଶରେ ଶିର ରଖି ଶୋଇ-ପଡ଼ିଲେ ଏବଂ ସୁଦର୍ଶନକୁ ଜଗାଇ ଦେଲେ । ରାକ୍ଷସ ଯୁଦ୍ଧକ୍ଷେତ୍ରରେ ନାରାୟଣଙ୍କୁ ନ ଦେଖି ସ୍ୱର୍ଗପୁରକୁ ଧାଡ଼ି ଦେଲା । ଦେବତାମାନେ ନିରୁପାୟ ହୋଇ କୈଳାସକୁ ଯାଇ ଶିବଙ୍କ ଶରଣ ନେଲେ । ଶିବ ଯୋଗମଗ୍ନ ଥିବା ଦେଖି ଗଣେଶଙ୍କୁ ପ୍ରାର୍ଥନା କରନ୍ତେ ଗଣେଶ ଶିବଙ୍କର ଯୋଗ ଭଙ୍ଗିବାକୁ ତାଣ୍ଡବ ନୃତ୍ୟ ଆରମ୍ଭ କଲେ । ତାଣ୍ଡବପ୍ରିୟ ଶିବ ତାଣ୍ଡବ ନାଦ ଶୁଣି ଯୋଗ ଭଗ୍ନ କରି ବଂ ବଂ ଶବ୍ଦ ଉଚ୍ଚାରଣ କରି ନୃତ୍ୟ କରିବାକୁ ଡେଇଁ ପଡ଼ିଲେ । ସେ ବଂ ଶବ୍ଦରୁ ଗୋଟିଏ ପୁରୁଷ ଜାତ ହେଲା । ତା'ର ନାମ ହେଲା ବମ୍ରି । ବମ୍ରିକୁ ଶିବ ଆଦେଶ ଦେଲେ— 'ତୁ ଯାଇ ନାରାୟଣଙ୍କର ନିଦ୍ରା ଭଙ୍ଗ କର ।' ବମ୍ରି ସୁଦର୍ଶନ ଭେଦ କରିବାକୁ ସକ୍ଷମ ନ ହୋଇ

ଶିବଙ୍କ ଆଦେଶ ପାଳନ କରିବାକୁ ଚିନ୍ତା କରି ପାତାଳକୁ ଯାଇ ପାତାଳ-ଭେଦୀ ସାରଙ୍ଗ ଧନୁର ଗୁଣଟିକୁ କାଟିଦେଲେ । ଗୁଣଟି ଛିଟିକି ଯାଇ ନାରାୟଣଙ୍କ ଶିର କମଳ କାଟିଦେଲା । ସୁଦର୍ଶନ ପ୍ରଜ୍ୱଳିତ ହୋଇ ସୃଷ୍ଟି ଧ୍ୱଂସ କରିବାକୁ ତତ୍ପର ହୁଅନ୍ତେ ବ୍ରହ୍ମାଦି ଦେବତାମାନେ ସାନ୍ତ୍ୱନା ଦେଇ ସୂର୍ଯ୍ୟଙ୍କ ରଥରୁ ଗୋଟିଏ ଅଶ୍ୱର ମୁଣ୍ଡ କାଟି ନାରାୟଣଙ୍କ ସ୍କନ୍ଧରେ ଯୋଗ କରି ଜୀବନ୍ୟାସ କଲେ । ଭଗବାନ ନାରାୟଣ ହୟଗ୍ରୀବ ରୂପ ହୋଇ ହୟଗ୍ରୀବ ରାକ୍ଷସକୁ ବିନାଶ କଲେ ।

— ହରିବଂଶ, ଦେବୀ ଭାଗବତ

***

## ସପ୍ତମ ସ୍କନ୍ଧ

**୨୯ ପଦ—**

ବ୍ରହ୍ମାଇଲେ ଅଧଃସ୍ୱର୍ଗେ ହସ୍ତରେ ତ୍ରିଶଙ୍କୁ ।
କାହୁଁ କେ ଆଣିଲେ ରାଜ୍ୟକୁ କଣଙ୍କୁ ॥ ୨୯ ॥

ଗାଧିରାଜାଙ୍କ ପୁତ୍ର ବିଶ୍ୱାମିତ୍ର ଦିନେ ମୃଗୟାକୁ ଯାଇଥିଲେ । ପ୍ରାକୃତିକ ବିପର୍ଯ୍ୟୟବଶତଃ ଝଡ଼ ତୋଫାନରେ ସସୈନ୍ୟ ହତଦନ୍ତ ହୋଇ ବଶିଷ୍ଠଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ବଶିଷ୍ଠ ନନ୍ଦିନୀଙ୍କ ସହାୟତାରେ ରାଜକୀୟ ଉପଚାର ଦ୍ୱାରା ସମ୍ମାନିତ କଲେ । ପରଦିନ ପ୍ରତ୍ୟୁଷରୁ ରାଜା ଭାବିଲେ— ଏ ବନବାସୀ ଋଷି ମୋପରି ରାଜାଙ୍କର ପରିଚର୍ଯ୍ୟା କେଉଁ ଉପାୟରେ ସଂପାଦନ କଲେ ? ପରେ ଋଷି ବଶିଷ୍ଠଙ୍କୁ ଏହାର କାରଣ ପଚାରିବାରେ ବଶିଷ୍ଠ ନନ୍ଦିନୀକୁ ଦେଖାଇ କହିଲେ, ଏ ହେଉଛନ୍ତି କାମଧେନୁ । ଏହାଙ୍କ ଦ୍ୱାରା ଅସମ୍ଭବ ସମ୍ଭବ ହୋଇପାରେ । ଏହି ନନ୍ଦିନୀ

ଆପଣଙ୍କର ସମସ୍ତ ସୈନ୍ୟସହ ଆପଣଙ୍କ ସେବା ପାଇଁ ସବୁ ଆୟୋଜନ କରିଥିଲେ ।' ଏକଥା ଶୁଣି ବିଶ୍ୱାମିତ୍ର ଲୋଭାକୃଷ୍ଟ ହୋଇ ବଶିଷ୍ଠଙ୍କୁ ନନ୍ଦିନୀ ଗାଇ ମାଗିଲେ । ବଶିଷ୍ଠ କହିଲେ, 'ହେ ମହାରାଜା ! ଏ ଗାଈ କାହାର ଅଧୀନସ୍ଥ ନୁହନ୍ତି । ସେ ତାଙ୍କ ଇଚ୍ଛାନୁସାରେ ଯେଉଁଠି ଇଚ୍ଛା ସେଠାରେ ରହନ୍ତି । ଆପଣଙ୍କୁ ନନ୍ଦିନୀଙ୍କୁ ଦେବା କ୍ଷମତା ମୋର ନାହିଁ ।' ଏହା ଶୁଣି ବିଶ୍ୱାମିତ୍ର ବଳାତ୍କାର ପୂର୍ବକ ନନ୍ଦିନୀକୁ ନେବାପାଇଁ ଇଚ୍ଛୁକ ହେବାରେ ନନ୍ଦିନୀ ନିଜ ଶକ୍ତି ବଳରେ ବିଶ୍ୱାମିତ୍ରଙ୍କର ସମସ୍ତ ସୈନ୍ୟଙ୍କୁ ମାରି-ପକାଇଲେ । ବିଶ୍ୱାମିତ୍ର ଲଜ୍ଜିତ ହୋଇ ବ୍ରହ୍ମର୍ଷି ହେବାକୁ ଇଚ୍ଛା କରି ହିମାଳୟରେ କଠୋର ତପସ୍ୟା କଲେ ।

ଇତିମଧ୍ୟରେ କାନ୍ୟକୁବ୍ଜରେ ଦୁର୍ଭିକ୍ଷ ପଡ଼ିଲା । ସବୁ ପ୍ରଜା ମରି-ଗଲେ । ବିଶ୍ୱାମିତ୍ରଙ୍କ ପତ୍ନୀ କୌଣସି ଉପାୟ ନପାଇ ନିଜର ପୁତ୍ରମାନଙ୍କୁ ନେଇ ରାଜ୍ୟ ଛାଡ଼ି ଅଯୋଧ୍ୟା ଅଭିମୁଖେ ଯାତ୍ରା କଲେ । ସେତେବେଳେ ଅଯୋଧ୍ୟାର ରାଜା ଥିଲେ ସତ୍ୟବ୍ରତ । ସେ ଗୋଟିଏ ବ୍ରାହ୍ମଣ କନ୍ୟାକୁ ବିବାହ କରିଥିବା ଯୋଗୁଁ ବଶିଷ୍ଠ ତାଙ୍କୁ ଚଣ୍ଡାଳ ହୁଅ ବୋଲି ଅଭିଶାପ ଦେଇ ନଗର ବାହାରେ ରଖାଇ ଦେଇଥିଲେ । ବିଶ୍ୱାମିତ୍ରଙ୍କ ପତ୍ନୀ ପୁତ୍ର-ମାନଙ୍କ ସଙ୍ଗରେ ଭିକ୍ଷା କରି କରି ଯାଇ ସତ୍ୟବ୍ରତଙ୍କ ନିକଟରେ ପହଞ୍ଚିଲେ । ସତ୍ୟବ୍ରତ ରାଜରାଣୀଙ୍କୁ ଚିହ୍ନି କହିଲେ, 'ମା ! ତୁମକୁ ଆଉ ଭିକ୍ଷା ମାଗିବାକୁ ପଡ଼ିବ ନାହିଁ । ମୁଁ ସତ୍ୟ କରୁଛି କଳେ ବଳେ ଖାଦ୍ୟ ସଂଗ୍ରହ କରି ତୁମ ପିଲାମାନଙ୍କୁ ଓ ତୁମକୁ ଯୋଗାଇବି । ଦିନେହେଲେ ମଧ୍ୟ ଉପବାସରେ ରଖାଇ ଦେବି ନାହିଁ । କାନ୍ୟକୁବ୍ଜର ରାଣୀ ଏପରି ଆଶ୍ୱାସନା ପାଇ ସେଠାରେ ରହିଲେ । କିନ୍ତୁ ବଶିଷ୍ଠଙ୍କ ନିକଟରେ ନନ୍ଦିନୀ ଥିବା ଯୋଗୁଁ ଅଯୋଧ୍ୟାକୁ ଦୁର୍ଭିକ୍ଷ ବାଧୁ ନଥାଏ । ଏହିପରି କିଛିଦିନ ଅତିବାହିତ ହେଲା । ସତ୍ୟବ୍ରତ ପ୍ରତ୍ୟହ ଶିକାର କରି ବିଶ୍ୱାମିତ୍ରଙ୍କ ପୁତ୍ର ଓ ପତ୍ନୀଙ୍କ ପାଇଁ ଖାଦ୍ୟ ସଂଗ୍ରହ କରନ୍ତି । ଦିନେ ବୁଲି ବୁଲି କୌଣସି ଶିକାର ନ ପାଇ ନିରାଶରେ ଫେରୁଛନ୍ତି, ଦେଖିଲେ ନନ୍ଦିନୀ ଚରୁଛି ।

ସତ୍ୟରକ୍ଷା କରିବା ନିମନ୍ତେ ସତ୍ୟବ୍ରତ ନନ୍ଦିନୀକୁ ମାରି ତା' ମାଂସ ନେଇ ରାଜରାଣୀଙ୍କୁ ଦେଲେ । ସେମାନେ ସୁଖରେ ରନ୍ଧନ କରି ଭୋଜନ କଲେ । ଦେଖୁ ଦେଖୁ ଦିନ ଅବସାନ ହେଲା । ଅଯୋଧ୍ୟାର ପ୍ରଜାମାନେ ବଶିଷ୍ଠଙ୍କ ଦ୍ୱାରସ୍ଥ ହେଲେ । ବଶିଷ୍ଠ ନନ୍ଦିନୀ ଅପେକ୍ଷାରେ । କିନ୍ତୁ ନନ୍ଦିନୀ ଫେରୁ-ନାହିଁ । ବଶିଷ୍ଠ ଯୋଗବଳରେ ଜାଣିଲେ ସତ୍ୟବ୍ରତ ନନ୍ଦିନୀକୁ ମାରି-ଦେଇଛି । ତେଣୁ ବଶିଷ୍ଠ ପୁନରାୟ ସତ୍ୟବ୍ରତକୁ ଅଭିଶାପ ଦେଲେ ତ୍ରିଶଙ୍କୁ ହୋଇଯାଅ । ସତ୍ୟବ୍ରତ ତ୍ରିଶଙ୍କୁ ହୋଇ ବଣ ଭିତରେ ବୁଲିବାକୁ ଲାଗିଲେ । ବିଶ୍ୱାମିତ୍ର ସିଦ୍ଧି ଲାଭ କରି ବ୍ରହ୍ମର୍ଷି ହୋଇ ନିଜ ରାଜ୍ୟକୁ ଫେରି ଦେଖନ୍ତି ତ ରାଜ୍ୟ ଶ୍ମଶାନରେ ପରିଣତ ହୋଇଛି । ପୁତ୍ର ପତ୍ନୀ କାହାର ସନ୍ଧାନ ନପାଇ ଶେଷରେ ଗୋଟିଏ ଚଣ୍ଡାଳ ମୁଖରୁ ଖବର ପାଇ ଅଯୋଧ୍ୟା ଅଭିମୁଖେ ଯାତ୍ରା ଆରମ୍ଭ କଲେ । ଅଯୋଧ୍ୟା ନଗର ସୀମାନ୍ତରେ ପତ୍ନୀଙ୍କ ସହିତ ସାକ୍ଷାତ ହୋଇ ତାଙ୍କଠାରୁ ସାହାଯ୍ୟକାରୀ ସତ୍ୟବ୍ରତ ତ୍ରିଶଙ୍କୁ ହେବା ଶୁଣି ବିଶ୍ୱାମିତ୍ର ବଣ ଭିତରେ ଯାଇ ତ୍ରିଶଙ୍କୁ ସହିତ ଭେଟ ହେଲେ ଏବଂ ନିଜର ବ୍ରହ୍ମଶକ୍ତି ପ୍ରଭାବରେ ସଶରୀରରେ ତ୍ରିଶଙ୍କୁକୁ ସ୍ୱର୍ଗକୁ ପଠାଇଲେ । ମାତ୍ର ଇନ୍ଦ୍ର ବଜ୍ରପାତ କରିବାରେ ମହା-ପ୍ରତିଭାସମ୍ପନ୍ନ ବିଶ୍ୱାମିତ୍ର ନୂତନ ସୃଷ୍ଟି ନିର୍ମାଣ କରି ଅଧା ସ୍ୱର୍ଗରେ ତ୍ରିଶଙ୍କୁଙ୍କୁ ରଖାଇଲେ ।

— ରାମାୟଣ

* *

୪୯ ପଦ –

ବାଡ଼ବେୟଠାରୁ ପାଇଥାଇ ମନୋହର,
ଦନ୍ତ ବକାରକୁ ମାନ କରଣ ଅକ୍ଷର । (୪୯)

ଅଶ୍ୱିନୀ କୁମାରଙ୍କ ମୁଖ ଅଶ୍ୱରୂପ ହେବାର କାରଣ, ସୂର୍ଯ୍ୟଙ୍କର ସହସ୍ରରଶ୍ମି ସହ୍ୟ କରି ନପାରି ସଂଜ୍ଞାଦେବୀ ନିଜ ଦେହରୁ ଗୋଟିଏ

ଛାୟାମୂର୍ତ୍ତି ବାହାର କରି କହିଲେ, 'ହେ ଛାୟା ! ତୁମେ ମୋ ରୂପ ଧାରଣ କରି ଭଗବାନ ସୂର୍ଯ୍ୟଙ୍କ ନିକଟରେ ଥାଅ । ମୁଁ ତାଙ୍କର ପ୍ରଖର କିରଣ ଜ୍ୱାଳା ସହି ପାରୁନାହିଁ ।' ଏତିକି କହି ସଞ୍ଜ୍ଞା ଗୋଟିଏ ଅଶ୍ୱିନୀ ରୂପ ଧରି ଚାଲିଗଲେ । କିଛିଦିନ ବିତିଗଲା ; ଛାୟାଦେବୀଙ୍କ ଗର୍ଭରୁ ସନ୍ତାନ ସନ୍ତତି ଜନ୍ମ ହେଲେ । କିନ୍ତୁ ସଂଜ୍ଞାଦେବୀଙ୍କ ଗର୍ଭସମ୍ଭୂତ ଯମ ଯମୁନା ଇତ୍ୟାଦିଙ୍କ ପ୍ରତି ଛାୟାଙ୍କର ଅନୁରାଗ କମିଗଲା । ଦିନେ କୌଣସି କାରଣ-ବଶତଃ ବାଳକ ଯମ ରାଗିଯାଇ ଛାୟାଙ୍କୁ ପଦ ପ୍ରହାର କରନ୍ତେ, ଛାୟା ଅଭିଶାପ ଦେଲେ, 'ତୋ ପାଦରେ କୁଷ୍ଠ ବ୍ୟାଧି ହେଉ ।' ଏ ଅଭିଶାପ ପାଇ ଯମ ସୂର୍ଯ୍ୟଦେବଙ୍କୁ କହିଲେ 'ପିତା ! ମା' ମୋତେ ଏପରି କଠୋର ଅଭିଶାପ ଦେଇଛନ୍ତି ।' ସୂର୍ଯ୍ୟ ଚିନ୍ତାକଲେ ମା ହୋଇ ପିଲାଙ୍କର ଦୋଷ ମାର୍ଜନ ନକରି ଏପରି ଅଭିଶାପ ଦେବା ଠିକ୍ ନୁହେଁ । ତେବେ ଏ କ'ଣ ପ୍ରକୃତରେ ମୋର ପତ୍ନୀ ନୁହନ୍ତି ? କିଛିକ୍ଷଣ ଚିନ୍ତାକରି ଜାଣିଲେ ଯେ, ପ୍ରକୃତରେ ଏ ସଂଜ୍ଞା ନୁହନ୍ତି । ତାଙ୍କର ଛାୟାମୂର୍ତ୍ତି । ତେଣୁ ସୂର୍ଯ୍ୟ କହିଲେ, 'ଆଜିଠାରୁ କେହି ମା' ଅଭିଶାପ ଦେଲେ, ପୁତ୍ରର କୌଣସି କ୍ଷତି ହେବ ନାହିଁ ।' ଏହି ଅଭିଶାପ ଦେଇ ସୂର୍ଯ୍ୟ ନିଜେ ଗୋଟିଏ ଅଶ୍ୱରୂପ ଧାରଣ କରି ସଂଜ୍ଞାଙ୍କ ନିକଟରେ ପହଞ୍ଚି ଘୋଟକୀ ରୂପୀ ସଂଜ୍ଞାଙ୍କ ସହିତ ପ୍ରଣୟ ଆରମ୍ଭ କଲେ । ସେଥିରେ ସଂଜ୍ଞା ଅନ୍ତଃସତ୍ତ୍ୱା ହୋଇ ପୁତ୍ରଟିଏ ପ୍ରସବ କଲେ । ସେ ପୁତ୍ର ହେଉଛନ୍ତି ଅଶ୍ୱିନୀକୁମାର ଅଶ୍ୱମୁଖ ।

— ସୂର୍ଯ୍ୟ ପୁରାଣ

* *
*

## ଦ୍ୱିତୀୟ ପ୍ରମାଣ—

ଦିନେ ନାରଦ ଲକ୍ଷ୍ମୀଙ୍କୁ ଅଭିଶାପ ଦେଲେ, 'ତୁମେ ବିଧବା ଦଶାପ୍ରାପ୍ତ ହୁଅ ।' ବ୍ରହ୍ମ ଅଭିଶାପ ଅଖଣ୍ଡ । ଏକଥା ଚିନ୍ତା କରି ଲକ୍ଷ୍ମୀ ପାତାଳ ବୈକୁଣ୍ଠରେ ପଦ୍ମାସନ କରି ତପସ୍ୟାରତ ରହିଲେ । ହୟଗ୍ରୀବଙ୍କୁ ମାରିବା

ପାଇଁ ନାରାୟଣ ଯୁଦ୍ଧ କରି କରି ନିଦ୍ରା ଗଲେ; ମାତ୍ର ବମ୍ରି ସେ ନିଦ୍ରା ଭାଙ୍ଗିବା ନିମିତ୍ତ ଧନୁର ଗୁଣଟି କାଟି ଦେବାରେ ନାରାୟଣଙ୍କର ଶିରକମଳ କଟି ପାତାଳ ବୈକୁଣ୍ଠରେ ଲକ୍ଷ୍ମୀଙ୍କ ହାତରେ ପଡ଼ିଲା । ଲକ୍ଷ୍ମୀ ବିଧବା ହେଲେ ଜାଣି ସେ ମୁଣ୍ଡଟି ଧରି ବିଳାପ କଲେ । ଏଣେ ଦେବତାମାନେ ସୂର୍ଯ୍ୟଙ୍କ ରଥରୁ ଗୋଟିଏ ଅଶ୍ୱ ଶିର କାଟି ନାରାୟଣଙ୍କୁ ଜୀବଦାନ ଦେଲେ । ହୟଗ୍ରୀବ ରୂପ ଧାରଣ କରି ଭଗବାନ ବିଷ୍ଣୁ ହୟଗ୍ରୀବ ରାକ୍ଷସକୁ ନିଧନ କଲେ । ତା'ପରେ ନିଜ ରୂପ ଧରିବାକୁ ଯାଇ ସୁଦର୍ଶନ ଦ୍ୱାରା ପୁନଃ ଶିର ଛେଦନ କରି ଲକ୍ଷ୍ମୀଙ୍କଠାରୁ ପୂର୍ବ କର୍ତ୍ତନ ଶିର ଆଣି ନିଜ ଅଙ୍ଗରେ ଯୋଡ଼ିଲେ ଏବଂ ଯେଉଁ ଅଶ୍ୱ ଶିରଟି ନାରାୟଣଙ୍କ ଅଙ୍ଗରେ ଲାଗିଥିଲା ସେ ଶିର ବିଷ୍ଣୁ ଅଂଶୀ ହୋଇଥିବାରୁ ବରୁଣଙ୍କୁ କହିଲେ, 'ଏ ଶିର ତୁମେ ସୁବିଧାରେ ରଖ । ଏହାଦ୍ୱାରା ଦେବତାମାନଙ୍କର ବହୁ କାର୍ଯ୍ୟ ସାଧନ ହେବ ।' ବରୁଣ ସେ ଶିର ନେଇ ଧନ୍ୱନ୍ତରିଙ୍କୁ ଦେଲେ । ଧନ୍ୱନ୍ତରି ସମୁଦ୍ର ମନ୍ଥନ ପରେ ଦେବବୈଦ୍ୟ ହୋଇ ରହିଲେ । କିଛିଦିନ ପରେ ତାଙ୍କ ଅଙ୍ଗରୁ ବିଷ୍ଣୁ ଅଂଶୀ ଅଶ୍ୱଶିର ଧାରଣ କରି ପୁତ୍ର ରୂପେ ଜନ୍ମଲାଭ କଲେ । ସେ ହେଉଛନ୍ତି ଅଶ୍ୱିନୀ କୁମାର ।

— ମହାଭାରତ ଓ ଦେବୀ ଭାଗବତ

*
* *

## ନବମ ଛାନ୍ଦ

ଦ୍ୱିତୀୟ ପଦ –

ବସ୍ତ୍ରପଦ୍ମୀ ବସ୍ତ୍ରପଦ    ଛକାର ଭେଦ ଶବ୍ଦ

ତଟିଣୀର ଗଡ଼ାରେ ତହିଁ ଉଚିତ,

ବିଶାରଦ ଯେ ସାମନ୍ତ    ମତରେ ଦାସ ହେବତ

ତାଙ୍କୁ ନ ଶୁଣନ୍ତେ ରଘୁନାଥ କଥିତ,

ବଷଧର ପ୍ରାୟେକ ଭ୍ରାନ୍ତ,

ଦେଲେ ନେଇ ତାଳ ଶୁଣ ଉଦାର ନୋହି । (୨)

ବିଶାରଦ ଯେ ସାମନ୍ତ –

ଗଙ୍ଗାନଦୀ କୂଳସ୍ଥ ସେହି ନଗରୀର ସାମନ୍ତ ରଜା ବିଶାରଦ ଥିବାରୁ ତାଙ୍କର ମତ(ଇଚ୍ଛା)ରେ ଦାସ ନୌକା ଖଟାଇ ଦେବାରେ ନିପୁଣ ଥିଲ । ପୁରାଣରେ ପ୍ରବାଦ ଅଛି – ଗଙ୍ଗା କୂଳରେ ବିଶାଳ ନଗରୀ ନାମରେ ଗୋଟିଏ ରାଜ୍ୟ ଥିଲ । ତା'ର ଅଧିପତି ହେଉଛନ୍ତି ରଜା କୁଶଧ୍ୱଜ । ତାଙ୍କର ଏକଶତ କନ୍ୟା । ସମସ୍ତେ ରୂପ ଗୁଣରେ ପରିପୂର୍ଣ୍ଣ । ଦିନେ ଉକ୍ତ କନ୍ୟାମାନେ ଉଦ୍ୟାନ ଭ୍ରମଣ କରୁଥିବା ଅବସ୍ଥାରେ ପବନ ଦେବ ଦେଖି ତାଙ୍କ ରୂପ ମାଧୁରୀରେ ବିହ୍ୱଳ ହୋଇ ପ୍ରୀତି ଭିକ୍ଷା କଲେ । କିନ୍ତୁ କନ୍ୟାମାନେ କହିଲେ, 'ହେ ଦୈବତ ! ଆପଣ ଜାଣନ୍ତି ପିତୃଦତ୍ତ କନ୍ୟା । ଆପଣ ଆମ ପିତାଙ୍କୁ ଜଣାଇ ଆମମାନଙ୍କୁ ଗ୍ରହଣ କରନ୍ତୁ । ଆମେ ଆପଣଙ୍କ ସେବାରେ ନିଯୁକ୍ତ ହୋଇ ପାରିବୁ । ନଚେତ୍ ଆମେ ଆପଣଙ୍କ ଅନୁରୋଧ ରଖିପାରିବୁ ନାହିଁ ।' ପବନ ଏକଥା ଶୁଣି ରାଗିଯାଇ ଅଭିଶାପ

ଦେଲେ, 'ତୁମେ ରୂପ ଗର୍ବରେ ମୋ କଥା ପ୍ରତ୍ୟାଖ୍ୟାନ କରିଛ । ତେଣୁ ତୁମେମାନେ ମୋ ବାଧିନ୍ରସ୍ତ ହୋଇ କୁ-ରୂପ ହୋଇଯାଅ ।' ତତ୍କ୍ଷଣାତ୍ ସମସ୍ତ କନ୍ୟା ବାତବ୍ୟାଧିଗ୍ରସ୍ତ ହୋଇ କୁଜି ହୋଇଗଲେ । ପବନ ଚାଲିଯିବା ପରେ ଏକଶତ କନ୍ୟା ଯାଇ ନିଜ ପିତା କୁଶଧ୍ୱଜଙ୍କୁ କହିଲେ । କୁଶଧ୍ୱଜ ପବନଙ୍କୁ ପ୍ରାର୍ଥନା କରି ଏହାର ପ୍ରତିକାର ଲୋଡ଼ିଲେ । ପବନ କହିଲେ ହେ, 'ହେ ରାଜନ ! ପରଂବ୍ରହ୍ମ ରାମ ରୂପରେ ଅଯୋଧ୍ୟାରେ ଜନ୍ମ ହେବେ । ବିଶ୍ୱାମିତ୍ର ତୁମ ବଂଶର ଦାୟାଦ । ତାଙ୍କୁ ଏହି ପଥରେ ମିଥିଳା ନେବେ । ସେହି ପ୍ରଭୁଙ୍କୁ ଦର୍ଶନ କଲେ ତୁମ କନ୍ୟାମାନେ ମୁକ୍ତି ପାଇବେ । ଏକଥା ଜାଣିଥିବାରୁ ସେ ସାମନ୍ତ କୁଶଧ୍ୱଜ ଧୀବରକୁ ନିଯୁକ୍ତି ଦେଇ କାମ୍ୟକ ବନ ଘାଟରେ ନୌକାଟି ଖଟାଇଥିଲେ ।

— ରାମାୟଣ

* * *

ଚତୁର୍ଥ ପଦ-

ବଢ଼ାଇ ଦେଲେକ ପଯ୍ୟର ସ୍ରୀଜଗ୍ରାହା ରଘୁବୀର
ପଦ୍ମରେ ଲାଳିତ କର ବଢ଼ିଲେ ପୋଛି,
ବ୍ରହ୍ମାରେ ଧୌତ ଯେ ପଦ ମୋହୁଛି ଶଙ୍କ ବଶାଦ
ନପାଇ ଚରଣାମୃତ ଧ୍ୟାନକୁ ଇଛି,
ବଳାଙ୍ଗ କୈବର୍ତ୍ତ ଧୋଇଲା,
ବଢ଼ୋନ୍ତି ଉତ୍ତମ ପାବନ ନାମ ରହିଲା । (୪)

କୈବର୍ତ୍ତ ବିଜ୍ଞାନୀ ପଦବ୍ରାଚ୍ୟ କାହିଁକି ? ତା'ର ପୂର୍ବଜନ୍ମ ବୃତ୍ତାନ୍ତ—

ଶାର୍ଦ୍ଦୂଳ ନାମକ ଜଣେ ଶବର ଦୈନନ୍ଦିନ ଶିକାର କରି କୁଟୁମ୍ବ

ପୋଷିବା ବ୍ୟତୀତ ସଂସାରର ଅନ୍ୟ ଧର୍ମ କର୍ମ କିଛି ଜାଣେନାହିଁ । ଥରେ ସାତଦିନ ପର୍ଯ୍ୟନ୍ତ ଶବର କୌଣସି ଶିକାର ନ ପାଇବାରୁ ତା'ର ପିଲା-ମାନେ କ୍ଷୁଧାରେ ଆତୁର ହେଲେ । ଏକଥା ଦେଖି ସେଦିନ ଶବର ଧନୁଶର ଧରି ମନରେ ଦୃଢ ସଙ୍କଳ୍ପ କଲା, ଆଜି ଶିକାର ନ ପାଇଲେ ମୁଁ ଘରକୁ ଫେରିବି ନାହିଁ ।' ଏପରି ଦୃଢପ୍ରତିଜ୍ଞ ହୋଇ ଶାର୍ଦ୍ଦୂଳ ବଣ-ଭିତରେ ଶିକାର ଖୋଜି ବୁଲିଲା । ସେଦିନ ସନ୍ଧ୍ୟା ହେଲା କିନ୍ତୁ କୌଣସି ଶିକାର ମିଳିଲା ନାହିଁ । ବୁଲି ବୁଲି ଗୋଟିଏ ପୋଖରୀ ନିକଟରେ ସେ ପହଞ୍ଚିଲା । ଶବର ଭାବିଲା ଏ ପୋଖରୀକୁ ରାତିରେ କୌଣସି ପ୍ରାଣୀ ଜଳପାନ କରିବାକୁ ନିଶ୍ଚୟ ଆସିବ । ତେଣୁ ଏଠାରେ ମୁଁ ଚାଲାକରି ଜଗି ରହିବି । ଏହିପରି ଭାବି ଶବର ପୋଖରୀ କୂଳରେ ଥିବା ଗୋଟିଏ ବେଲ ଗଛରେ ଲୁଚି ବସିଲା ଏବଂ ଗୋଟିଏ କଳସୀରେ କିଛି ପାଣି ନେଇ ଗଛର ଗୋଟିଏ ତ୍ରିଶାଖାରେ ରଖିଦେଲା । ଦେଖୁ ଦେଖୁ ପ୍ରଥମ ପ୍ରହର ଗତି ହେଲା । ଗୋଟିଏ ମୃଗୁଣୀ ପାଣି ପିଇବାକୁ ଆସିଲା । ଶବର ତର-ତର ହୋଇ ଧନୁରେ ଶର ଯୋଖି ଟାଣିଦେଲା ବେଳକୁ ଦୁଇଟି ବେଲପତ୍ର ଛିଣ୍ଡି ତଳେ ପଡ଼ିଗଲା ଏବଂ କଳସୀଟି ଟହଲି ଟିକିଏ ପାଣି ପଡ଼ିଗଲା । ସେ ଗଛ ମୂଳରେ ବହୁ କାଳରୁ ଅପୂଜା ହୋଇ ଶିବ ଲିଙ୍ଗଟିଏ ଥିଲା । ଦୈବାତ୍ ସେଦିନ ଶିବ ଚତୁର୍ଦ୍ଦଶୀ । ତେଣୁ ଶିବଙ୍କର ପ୍ରଥମ ପ୍ରହର ପୂଜା ହୋଇଯିବାରୁ ଶିବଙ୍କ ଅନୁକମ୍ପାରେ ଶବର ହୃଦୟରେ ଦୟା ପ୍ରବେଶ କରିଗଲେ । ମୃଗୁଣୀଟି ଶବରକୁ ଚାହିଁ ମନୁଷ୍ୟ କଣ୍ଠରେ କହିଲା, 'ଶବର, ମୁଁ ଜାଣିପାରିଲିଣି ତୁ ମୋତେ ନିଶ୍ଚୟ ମାରିବୁ । କିନ୍ତୁ ତୁ ଦୟାକରି ମୋତେ ନ ମାରି ଛାଡ଼ିଦିଏ । ମୁଁ ସତ୍ୟକରି ଯାଉଛି । ମୋର ଘରେ ଯୋଡ଼ିଏ ପିଲା ମତେ ନ ଦେଖି ବ୍ୟାକୁଳ ହେଉଥିବେ । ମୁଁ ସେମାନଙ୍କୁ ମୋର ଗୋଟିଏ ସଉତୁଣୀ ନିକଟରେ ଛାଡ଼ିଦେଇ ଆସିବି । ତା'ପରେ ତୁ ମୋତେ ମାରିବୁ ।' ଶବର ଆଶ୍ଚର୍ଯ୍ୟ ହୋଇ ସେ ମୃଗୁଣୀଟିକୁ ଛାଡ଼ିଦେଲା । ଗଲା ଦ୍ୱିତୀୟ ପ୍ରହରରେ ସେ ମୃଗୁଣୀ ଫେରୁନାହିଁ । ଶବର ଚିନ୍ତିତ । ଏତିକିବେଳେ ଆଉ ଏକ ହୃଷ୍ଟପୁଷ୍ଟ ମୃଗୁଣୀ ଆସି ପ୍ରବେଶ ହେଲା । ଶବର ଭାବିଲା, 'ଏହିଟିକୁ ମାରି ଶିକାର ନେବି ।' ଏତିକି ଭାବି ପୂର୍ବପରି ଧନୁରେ

ଶର ଯୋଖିଲାବେଳେ ଦୁଇଟି ବେଲପତ୍ର ଓ ଟିକିଏ ପାଣି ପଡ଼ି ପୂନଶ୍ଚ ଶିବଙ୍କର ଦ୍ୱିତୀୟ ପ୍ରହର ପୂଜା ହୋଇଗଲା । ଶବର ହୃଦୟରେ କ୍ଷମା ପ୍ରବେଶ କରିଗଲେ । ଦ୍ୱିତୀୟ ମୃଗୁଣୀ କହିଲା, 'ଶବର, ତୁ କ୍ଷମାକରି ମୋତେ ନମାରି ଛାଡ଼ିଦିଏ । ମୁଁ ମୋର ସପତ୍ନୀକୁ ଖୋଜିବାକୁ ଆସି ତୋ କବଳରେ ପଡ଼ିଛି । ଘରେ ତାର ପିଲାଦୁଇଟି ବଡ଼ ବ୍ୟାକୁଳ ହେଉ-ଛନ୍ତି । ମୁଁ ସପତ୍ନୀକୁ ଖୋଜି ତା ପିଲାମାନଙ୍କୁ ତା' ନିକଟରେ ଛାଡ଼ି-ଦେଇ ଆସିବି । ତା'ପରେ ତୁ ମତେ ମାରିବୁ ।' ଶବର ଦ୍ୱିତୀୟ ମୃଗୁଣୀଟିକୁ ଛାଡ଼ିଦେଲା । ତୃତୀୟ ପ୍ରହର ଗତି ହେବା ପୂର୍ବରୁ ଦୁଇଟିଯାକ ମୃଗୁଣୀ ଆସିଲେ ନାହିଁ । ଗୋଟିଏ ବୃଦ୍ଧା ମୃଗ ଆସି ପହଞ୍ଚିଲା । ଶବର ଭାବିଲା, 'ଏହାକୁ ମାରି ମାଂସ ନେଇ କୁଟୁମ୍ବ ପ୍ରତିପୋଷଣ କରିବି ।' ପୂର୍ବବତ୍ ଧନୁରେ ଶର ଯୋଖି ଟାଣିଦେଲା ବେଳକୁ ଦୁଇଟି ବେଲପତ୍ର ଓ ଟିକିଏ ପାଣି ପଡ଼ି ଶିବଙ୍କର ତୃତୀୟ ପ୍ରହର ପୂଜା ଶେଷ ହେଲା । ଏଣୁ ଶବର ହୃଦୟରେ ଶାନ୍ତି ପ୍ରବେଶ କରିଗଲେ । ବୃଦ୍ଧ ମୃଗ ଶବରକୁ କହିଲେ, 'ହେ ବ୍ୟାଧ ! ତୁ ମୋତେ ମାରନା । ମୋର ଶାନ୍ତିର କୁଟୀରରେ ଅଗ୍ନି ଲାଗିଯିବ । ମୋର ଦୁଇଟି ପତ୍ନୀ ଥାଇ ସୁଦ୍ଧା ସେମାନେ ଘରେ ନଥିବାରୁ ମୋର ଛୁଆ ଦୁଇଟି ବିକଳ ହେଉଛନ୍ତି । ମୁଁ ସେମାନଙ୍କୁ ଖୋଜି ଖୋଜି ତୋ ହାତରେ ପଡ଼ିଛି । ତୁ ଦୟାପରବଶ ହୋଇ ମୋତେ ଛାଡ଼ିଦିଏ । ମୁଁ ମୋର ପତ୍ନୀମାନଙ୍କୁ ବୁଝାଇ ତାଙ୍କ ନିକଟରେ ଛୁଆଦୁଇଟି ଛାଡ଼ିଦେଇ ଆସିବି । ତୁ ମୋତେ ବଧ କରିବୁ ।' ଶବର ମୃଗଟିକୁ ମଧ୍ୟ ଛାଡ଼ିଦେଲା । ଚତୁର୍ଥ ପ୍ରହର ଗତି । ପୂର୍ବୋକ୍ତ ମୃଗ, ମୃଗୁଣୀ କେହି ଆସିଲେ ନାହିଁ । ଶବର ଚିନ୍ତା ମଗ୍ନ । ଏତିକିବେଳେ ଦେଖିଲା ଯୋଡ଼ିଏ ମୃଗ ଶାବକ ଆସୁଛନ୍ତି । ଶବର ସେ ଦୁଇଟି ମାରିବାକୁ ଉଦବେଗ ପ୍ରକାଶ କରି ଧନୁରେ ଶର ଯୋଖି ଟାଣି ଦବାରେ ପୂର୍ବପରି ଦୁଇଟି ବେଲପତ୍ର ଟିକିଏ ପାଣି ପଡ଼ି ଚତୁର୍ଥ ପ୍ରହର ପୂଜା ଶେଷ ହେଲା । ଶବର ହୃଦୟରେ ଧର୍ମ ଓ ବିବେକ ପ୍ରବେଶ କରିଗଲେ । ମୃଗ ଶାବକ ଦୁଇଟି ଶବରଆଡ଼କୁ ଗୁହିଁ କହିଲେ, 'ହେ ମହାନୁଭବ ! ତୁମେ ଦୟାକରି ଆମକୁ ଛାଡ଼ିଦିଅ । ଆମେ ଆମର ପିତା-ମାତାଙ୍କୁ ଏକତ୍ରିତ କରି ବିଦାୟ ନେଇ ଆସିବୁ ।

ତୁମେ ଆମକୁ ମାରିବ ।' ଶବର ମୃଗଛୁଆଙ୍କ କଥାରେ ତରଳି ଯାଇ ଛାଡ଼ିଦେଲା । ରାତ୍ର ଶେଷ ହେଲା । ଶବର ଚିନ୍ତା କରୁଛି କ'ଣ କରିବି ; ଏତିକିବେଳେ ଦେଖିଲା ପୂର୍ବରୁ ଯାଇଥିବା ଦୁଇଟି ମୃଗୁଣୀ, ବୃଦ୍ଧମୃଗ ଓ ମୃଗ ଶାବକ ସମସ୍ତେ ଏକାଠି ଆସି ଶବର ପାଖରେ ପହଞ୍ଚିଲେ ।

ପ୍ରଥମ ମୃଗୁଣୀ କହିଲା–'ଶବର ! ତୁ ଆମ ଭିତରୁ ଜଣକୁ ମାରିନେ ! ମୁଁ ହେଉଛି ତୋର ପ୍ରଥମ ଶିକାର । ମୋତେ ମାରି ଏମାନଙ୍କୁ ଛାଡ଼ିଦେ । କାହିଁକି ନା ନୀତି ଶାସ୍ତ୍ରରେ ପ୍ରମାଣ ଅଛି :–

ଅନ୍ତଦର୍ପେ ହୃଚ୍ଛାଲଙ୍କା ଅନ୍ତ ମାତଂଗଚ କୌରବାଃ,
ଅନ୍ତଦାନେ ବଳିର୍ବଧଃ ଅନ୍ତ ସର୍ବତ୍ର ଗର୍ହିତମ ॥'

ଦ୍ୱିତୀୟ ମୃଗୁଣୀ କହିଲା, 'ଶବର ! ତୁ ପ୍ରଥମକୁ ନମାରି ମୋତେ ମାର । ଏମାନଙ୍କୁ ଛାଡ଼ିଦିଅ । କାରଣ, ମୋର ସନ୍ତାନସନ୍ତତି କେହି ନାହାନ୍ତି । ମୁଁ କାହାପାଇଁ ବ୍ୟସ୍ତ ହେବାର ନାହିଁ । ମୁଁ ବନ୍ଧ୍ୟା– ଏଣୁ ତୋର ବଂଶର ଉଦ୍ଧାର ପାଇଁ ମୋତେ ମାରି ତୋର ଅଭୀଷ୍ଟ ପୂର୍ଣ୍ଣ କର ।' ବୃଦ୍ଧ ମୃଗ କହିଲା, 'ଶବର ! ନାରୀହତ୍ୟା ମହାପାପ । ତୁ ଏମାନଙ୍କୁ ଛାଡ଼ି ମୋତେ ମାର । ମୋର ସଂସାର ପ୍ରତି ବୈରାଗ୍ୟ ଆସିଲାଣି । ପ୍ରମାଣ ଅଛି :–

କୃତଂ କୃତ୍ୟ ଶରୀରଂମେ ପରିଣାମେନ ଜର୍ଜ୍ଜରମ ।

ମୋର ଆଉ ବଞ୍ଚିବା କେତେଦିନ । ଏଣୁ ତୁ ଏମାନଙ୍କୁ ଛାଡ଼ିଦେଇ ମୋତେ ମାରି ମୋ ମାଂସ ନେଇଯାଅ ।' ଛୁଆ ଦୁଇଟି କହିଲେ, 'ହେ ଶବର ! ତୁମେ ମଧ୍ୟ କାହାର ସନ୍ତାନ । ସନ୍ତାନଙ୍କ ଆଗରେ ବାପା, ମା ମରିବେ ସେ ସନ୍ତାନ ଦେଖୁଥିବ । ଏଥିରେ ତା'ର ଇହ ଓ ପରଲୋକରେ ମଧ୍ୟ ସ୍ଥାନ ନାହିଁ । କୁ-ସନ୍ତାନ ଏହାର ବିଚାର କରିପାରନ୍ତି । ସୁ-ସନ୍ତାନ ହୋଇ ଏକଥା କେବେ ସହ୍ୟ କରିପାରିବେ ନାହିଁ । ପ୍ରମାଣ ଅଛି :–

ମମ ପ୍ରାଣେଭ୍ୟଃ ଗୁରୁ ପ୍ରାଣାନ ଚନ୍ଛାମି ପରିରକ୍ଷିତୁମ !
ରକ୍ଷଣାର୍ଥ୍ୟ କୃଳେସ୍ୟ ଚ ମୁକ୍ତମର୍ହନ୍ତୁ ଭବାନ ।।

ଏଣୁ ତୁ ଆମର ପିତାମାତାଙ୍କୁ ଛାଡ଼ି ଆମକୁ ମାରିଦେ ।' ଶବର ପଶୁ-ଜାତି ମୃଗ-ମୃଗୁଣୀଙ୍କ କଥା ଶୁଣି ବିଗ୍ଭର କଲା, 'ଏମାନଙ୍କର କି ସହୃଦୟତା । ଜଣଙ୍କ ପାଇଁ ଜଣେ ପ୍ରାଣ ଦେବାକୁ ପଶ୍ଚାତ୍‌ପଦ ନୁହନ୍ତି । ଏମାନଙ୍କର ସୁଖର ସଂସାର ଭଙ୍ଗାଡ଼ି ମୁଁ କି ସୁଖ ପାଇବି ?' ଏହା ବିଗ୍ଭର କରି ଶବର କହିଲା, 'ହେ ମୃଗମୃଗୀ, ତୁମେମାନେ ସମସ୍ତେ ଫେରିଯାଅ । ମୁଁ ତୁମକୁ ମାରି ତୁମର ସୁଖର ସଂସାର ଭଙ୍ଗାଡ଼ିବାକୁ ଗ୍ଭହେଁନା । ଏତିକି କହି ଶବର ଧନୁ ଧରି ଫେରିଲା । ପଛରୁ ଡାକ ଶୁଭିଲା, ଶବର ଶୁଣ । ଶବର ଲେଉଟି ଗ୍ଭହିଁ ଦିଏ ତ ମୃଗ ମୃଗୁଣୀ କେହି ନାହାନ୍ତି । ସ୍ୱୟଂ ଶିବ ସକୁଟୁମ୍ବେ ଆବିର୍ଭାବ ହୋଇଛନ୍ତି । ଶିବ, ଗଙ୍ଗା, ପାର୍ବତୀ ଏବଂ ଗଣେଶ କାର୍ତ୍ତିକେୟ । ଶବର ପଗ୍ଭରିଲା, 'ଆପଣମାନେ କିଏ ? ମୋତେ କାହିଁକି ଡାକିଲେ ?' ଶିବ କହିଲେ, 'ଶବର ତୋର ଏକନିଷ୍ଠ ବ୍ରତ ଫଳରେ ତୋର ସମସ୍ତ ପାପ ଖଣ୍ଡନ କରି ମୁଁ କୈଳାସ ଅଧିପତି ଶିବ ତୋତେ ଦର୍ଶନ ଦେଇଛି । ତୁ କ'ଣ ବର ମାଗୁଛୁ ମାଗିନେ ।' ଶବର ଭବିଲା, 'ମୋର ଏ ଜୀବନରେ ଯେତେ ପାପ ହୋଇଛି ଏହାଙ୍କ ଦର୍ଶନରେ ଯଦି ଖଣ୍ଡନ ହେଲା । ତେବେ ଆଉ କ'ଣ ବର ମାଗିବି । ଧନ ଜନ ମାଗି ପୁଣି କଣ ପାପ ସାଗରରେ ବୁଡ଼ିବି ।' ଏହା ଭବି କହିଲା, 'ହେ ପ୍ରଭୁ ! ଆପଣ ଯଦି ମୋତେ ବର ଦେବେ ତେବେ ମୋତେ ମୁକ୍ତି ଦିଅନ୍ତୁ ।' ଏକଥା ଶୁଣି ଶିବ କହିଲେ, 'ହେ ଶବର, ମୁକ୍ତି ବିଷ୍ଣୁଙ୍କ ବ୍ୟତୀତ ଅନ୍ୟ କେହି ଦେଇପାରିବେ ନାହିଁ । ତୁ ଏ ବର ଛାଡ଼ି ଆଉ ଯାହା ମାଗିବୁ ମାଗିନେ ।' ଶବର କହିଲା, 'ଠାକୁରେ ! ଯଦି ମୁକ୍ତି ଦେଇ ନ ପାରିବେ ଅନ୍ୟ ବର ମାଗି ମାୟାଜାଲରେ ପଡ଼ି ମୁଁ ପୁଣ ପାପ ଅର୍ଜନ କରି ନର୍କଗାମୀ ହେବି କାହିଁକି ? ମୋର ଅନ୍ୟ ବର ଦରକାର ନାହିଁ ।' ଶିବ କହିଲେ, 'ହେ ଶବର ତୋର ନିଷ୍କାମହୃଦୟ ଦେଖି

ମୋର ଆନନ୍ଦର ସୀମା ନାହିଁ । ମୁଁ ତୋତେ ଏ ବର ଦେଉଛି—ତୁ ଅପର ଜନ୍ମରେ କାନ୍ୟକୁବ୍ଜର ଧୀବରକୁଳରେ ସ୍ଥାନପାଇବୁ ଏବଂ ଜାତିସ୍ମରହେବୁ । ଏ ଜନ୍ମର କଥା ତୋର ମନେ ଥିବ । ପ୍ରଭୁ ଅଯୋଧ୍ୟାରେ ରାମ ରୂପରେ ଜନ୍ମ ଗ୍ରହଣ କରିବେ । ବିଶ୍ୱାମିତ୍ର ଶ୍ରୀରାମଚନ୍ଦ୍ରଙ୍କୁ ଯାଗ ରକ୍ଷା ପାଇଁ ଆଣିବେ ଏବଂ କାନ୍ୟକୁବ୍ଜ ଦେଇ ମିଥିଳା ଯାତ୍ରା କରିବେ । ତୁ ସେତେବେଳେ ପ୍ରଭୁଙ୍କର ପଦ୍ମପାଦ ଧୋଇ ଚରଣାମୃତ ସେବାକରି ନିର୍ବାଣପ୍ରାପ୍ତ ହେବୁ ।' ଶବର ଏକଥା ଜାଣିଥିବାରୁ ଅନ୍ତରରେ ଭକ୍ତି ରଖି ଛଳନା କରି କହିଲା, 'ପାଦ ନ ଧୋଇଲେ ନୌକାରେ ବସାଇ ଦେବିନାହିଁ ।' ପ୍ରଭୁ ମଧ୍ୟ ତା'ର ଭାବ ଗ୍ରହଣ କରି ପାଦ ବଢ଼ାଇଦେଲେ ।

— ଶିବ ପୁରାଣ

* * *

ଚତୁର୍ଥ ପଦ—

**ବ୍ରହ୍ମାରେ ଧୌତ ଯେ ପଦ ଜନୋହିନ୍ତୁ ଶିବ ବଷାଦ**
**ନପାଇ ଚରଣାମୃତ ପାନକୁ ଇଚ୍ଛି ।**

ସୃଷ୍ଟି ଆରମ୍ଭ ସମୟରେ ସମଗ୍ରସୃଷ୍ଟି ଜଳାର୍ଣ୍ଣବ ଥିବାବେଳେ ଅନନ୍ତନାଗ ଉପରେ ଭଗବାନ ଯୋଗ ବଳରେ ନାଭିକମଳରୁ ବ୍ରହ୍ମାଙ୍କୁ ଜନ୍ମ ଦେଇ ସୃଷ୍ଟି ସର୍ଜନା କରିବାକୁ ଶୂନ୍ୟବାଣୀ ଦ୍ୱାରା ନିର୍ଦ୍ଦେଶ ଦେଲେ । ବ୍ରହ୍ମା ସୃଷ୍ଟି ନିର୍ମାଣ କରି ଚିନ୍ତା କଲେ, 'ପୂଜ୍ୟପୂଜା କରିବା ସଂସାରର ଧର୍ମ । ମୋର ଜନ୍ମଦାତା ହେଉଛନ୍ତି ମୋର ପୂଜ୍ୟ । ମୁଁ ତାଙ୍କ ଚରଣ ଧୋଇ ଚରଣାମୃତ ପାନ କରିବି ।' ଏହା ଭାବି ପିତାମହ ନିଜ ମାନସପଟଳରୁ ଗଙ୍ଗାଙ୍କୁ ଜାତ କରାଇ କମଣ୍ଡଳୁ ମଧ୍ୟରେ ରଖିଲେ । ଭାବିଲେ, 'ନିରାକାର ପୁରୁଷ ଆକାରବନ୍ତ ହେଲେ ମୁଁ ଚରଣ ଧୋଇ ପଦୋଦକ ସେବା କରିବି ।' କିନ୍ତୁ କେତେକାଳ ବିତିଗଲା । ଭଗବାନଙ୍କର ଦର୍ଶନ ନପାଇ ବ୍ରହ୍ମା ଭାବିଲେ, 'ମୁଁ ଦୈବବାଣୀ ଶୁଣିଛି — ଧର୍ମର ଗ୍ଲାନି ଘଟିଲେ ଭଗବାନ ଅବତାର ଗ୍ରହଣ କରିବେ ।'

ଗୀତାରେ ଅଛି —

'ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ !
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।'

ଏହା ବିଚାରି ବ୍ରହ୍ମା ଗୋଟିଏ ଦୁର୍ଦ୍ଦାନ୍ତ ରାକ୍ଷସକୁ ଜନ୍ମ ଦେଲେ । ସେ ରାକ୍ଷସ ମହା ଶକ୍ତିଶାଳୀ ହୋଇ ଭାବିଲା, 'ମୋଠାରୁ ସୃଷ୍ଟିରେ ଆଉ ବଡ଼ କିଏ ? ତେବେ ପିତାମହ ହେଉଛନ୍ତି ବଡ଼ । ଏ ବ୍ରହ୍ମାଙ୍କୁ ମାରି ମୁଁ ସର୍ବଶ୍ରେଷ୍ଠ ହେବି । କିନ୍ତୁ ସୃଷ୍ଟି ଚାଲିଲେ ସିନା ଆଦର ମିଳିବ । ରାଜ୍ୟ ନଥାଇ ରାଜା କ'ଣ ସୁନ୍ଦର ? ତେବେ ସୃଷ୍ଟି ବେଦଦ୍ୱାରା ପରିଚାଳିତ । ବେଦାଧିକାରୀ ହେଉଛନ୍ତି ବ୍ରହ୍ମା । ମୋତେ ପ୍ରଥମେ ବେଦକୁ ଆୟତ କରିବାକୁ ହେବ ।' ଯୋଗକୁ ଦିନେ ବ୍ରହ୍ମା ବେଦକୁ ସାଗର କୂଳରେ ଥୋଇ ତର୍ପଣ କରୁଛନ୍ତି; ରାକ୍ଷସ ସେ ବେଦପୋଥି ଚୋରିକରି ସମୁଦ୍ର ଭିତରେ ଲୁଚି ରହିଲା । ବ୍ରହ୍ମା ତର୍ପଣ ସାରି ଦେଖିଲେ ବେଦ ନାହିଁ । ଯୋଗ ବଳରେ ଜାଣିଲେ ଶଙ୍ଖାସୁର ବେଦ ଚୋରି କରି ନେଇଛି । ଏଣୁ ବିକଳ ହୋଇ ନାରାୟଣଙ୍କୁ ଚିନ୍ତା କରିବାରେ ଶୂନ୍ୟବାଣୀ ହେଲା, 'ପିତାମହ, ତୁମେ ଚିନ୍ତା କରନାହିଁ । ମୁଁ ବେଦ ଆଣି ତୁମକୁ ଅଳ୍ପଦିନ ମଧ୍ୟରେ ଦେବି ।' ବ୍ରହ୍ମା ଆନନ୍ଦ ହେଲେ— ଏଥର ମୋର ଅଭିଳାଷ ପୂର୍ଣ୍ଣ ହେବ । କିନ୍ତୁ ଅନ୍ତର୍ଯ୍ୟାମୀଠାକୁର ବ୍ରହ୍ମାଙ୍କ ମନୋଭାବ ଜାଣି ମୀନ ଅବତାର ହୋଇ ଶଙ୍ଖାସୁରକୁ ସମୁଦ୍ର ଗର୍ଭରୁ ଖୋଜି ବାହାର କଲେ ଏବଂ ଚତୁର୍ଭୁଜ ମୂର୍ତ୍ତି ହୋଇ ଶଙ୍ଖାସୁରକୁ ବିନାଶ କଲେ । ବ୍ରହ୍ମା ଏ ସମୟରେ ବରୁଣପୁରରେ ପ୍ରବେଶ କରି ପାଦ ଧୋଇବା ଉଦ୍ଦେଶ୍ୟରେ ଦେଖନ୍ତି ତ ଭଗବାନଙ୍କର ପାଦ ନାହିଁ । ଗୋଟିଏ ମାଛଲାଞ୍ଜ ଛଟ ଛଟ ହେଉଛି । ବ୍ରହ୍ମା ନିରାଶ ହୋଇ ଫେରିଲେ । ଦ୍ୱିତୀୟ ଥର ଦେବାସୁରି ମିଶି ସମୁଦ୍ର ମନ୍ଥନ କଲେ । ମନ୍ଦର ପର୍ବତ ହେଲା ଖଆଦଣ୍ଡ । ବାସୁକି ହେଲା ରଜ୍ଜୁ । ଦେବତାମାନଙ୍କ କଥାରେ ନାରାୟଣ ପୃଥିବୀକୁ ପୃଷ୍ଠରେ ଧାରଣ କଲେ । ଏ ଘଟସୂତ୍ର ବିଧାତା ଭିଆଣ କରି ଦେବତା ଓ ଅସୁରଙ୍କୁ ସମୁଦ୍ର ମନ୍ଥନ

ପାଇଁ ଲଗାଇ ଦେଇ କମଣ୍ଡଳୁଟି ଧରି ପାତାଳପୁରରେ ପହଞ୍ଚିଲେ । ନାରାୟଣ ବ୍ରହ୍ମାଙ୍କ ମନୋଭାବ ଜାଣି କଚ୍ଛପ ମୂର୍ତ୍ତି ଧାରଣ କରି ପୃଥିବୀକୁ ପୃଷ୍ଠରେ ଧରିଛନ୍ତି । ବ୍ରହ୍ମା ଯିବାରେ କଚ୍ଛପ ପ୍ରକୃତି ଅନୁଯାୟୀ ପାଦ ଓ ଶିର ଲୁଗ୍ଭଇଦେଲେ । ବ୍ରହ୍ମା ପାଦ ନଦେଖି ନିରାଶ ହୋଇ ଫେରିଲେ । ତୃତୀୟ ଅବତାର ବରାହ, ଚତୁର୍ଥ ଅବତାର ନୃସିଂହ, ଏ ବିକଟାଳ ରୂପ ଅତି ଭୟଙ୍କର । ତେଣୁ ବ୍ରହ୍ମା ନିକଟରେ ପ୍ରବେଶ କରିପାରିଲେ ନାହିଁ । ପଞ୍ଚମ ଅବତାର ବାମନ । ଧର୍ମଶୀଳ ବଳିକୁ ଛଳିବା ପାଇଁ ଭଗବାନ ଦ୍ୱାଦଶ ଅଙ୍ଗୁଳ ପରିମିତ ବାମନ ଶରୀର ଧରି ବଳି ରାଜାଙ୍କୁ ସତ୍ୟ କରାଇ ତିନିପାଦ ଭୂମି ଦାନ ମାଗିନେଲେ । ବଳି ସତ୍ୟ କରିବାରେ ଭଗବାନ ତ୍ରିବିକ୍ରମ ମୂର୍ତ୍ତି ଧରି ଗୋଟିଏ ପାଦ ସସାଗର ପୃଥିବୀ ମାଡ଼ି ବସିଲେ । ଦ୍ୱିତୀୟ ପାଦ ଗ୍ରହ ନକ୍ଷତ୍ର ଆଦି ଶୂନ୍ୟମଣ୍ଡଳ ସ୍ୱର୍ଗପୁରକୁ ଆଚ୍ଛାଦିତ କଲେ । ସେତେବେଳେ ବ୍ରହ୍ମା ପାଦ ଧୋଇବା ପାଇଁ ପୂର୍ବରୁ ସଞ୍ଚିତ ରଖିଥିବା ଗଙ୍ଗାଜଳକୁ ପାଦରେ ଢାଳିଦେଲେ । ଗର୍ବ ଗଞ୍ଜନକାରୀ ଭଗବାନ ବ୍ରହ୍ମାଙ୍କର ମନୋଭାବ ଜାଣି ସେ ଚଉରାଶି କୋଟି ଗଙ୍ଗାଜଳକୁ ହରଣ କରି ନିଜର ପାଦାଙ୍ଗୁଳି ନଖ କଣରେ ଲୁଗ୍ଭଇ ରଖିଲେ ।

ପ୍ରମାଣ ଅଛି —

'ଅନେକ ଦିନରୁ ଗଙ୍ଗା କମଣ୍ଡଳେ ସଞ୍ଚି,
ସେପାଦ ଧୋଇବା ପାଇଁ ଢାଳିଲେ ବିରଞ୍ଚି ।
ପାଦକୁ ନ ଅଣ୍ଟି ମନ୍ଦାକିନୀ ବନ୍ଧୁଟଳି,
ତୁଷାର କଣିକାପ୍ରାୟ ନଖାଗ୍ରେ ରହିଲି ।

ସେହିଦିନଠାରୁ ବ୍ରହ୍ମା ପାଦ ନ ଧୋଇପାରି ଦୁଃଖିତ । ଶିବ ବ୍ରହ୍ମାଙ୍କର ଅନ୍ତର କଥା ଜାଣି ଯେତେବେଳେ ଗଙ୍ଗାଙ୍କୁ ପ୍ରଭୁଙ୍କ ପାଦରେ ଢାଳିଲେ ଶିବ କୈଳାସରେ ଥାଇ ଚରଣୋଦକ ପାଇବାକୁ ଇଚ୍ଛାକରି

ଅଞ୍ଜଳି ପାତି ବସିଥିଲେ; କିନ୍ତୁ ପାଦ ତ ଧୋଇ ହେଲନାହିଁ । ଏ ପଦ ମକରନ୍ଦ ଝରିଲେ ସିନା ଶିବ ପାନ କରନ୍ତେ । ବିନ୍ଦୁଏ ସୁଧା ଚରଣାମୃତ ନପାଇ ଶିବ ବିଷାଦ ଅନୁଭବ କରିଥିଲେ ।

* *
*

## ପଞ୍ଚମ ପଦ—

ବାଞ୍ଛା ପଲ୍ଲବ ନାଚରେ ପଦ ବିକଳ୍ପ ମନରେ
ବ୍ରତଧାରୀ ଘରରେ ମଣାଇ ବସାଇ,
ବିଶ୍ୱାମିତ୍ରଙ୍କୁ ଶ୍ରୀରାମ ପଚାରିଲେ ଗଙ୍ଗାନାମ
ଭାଗୀରଥୀ କିଂପା ହେଲା କହ ଗୋସାଇଁ ।
ବିଷ୍ଣୁ ନଖକୋଣେ ଏ ଥିଲା,
କାମନାବଶରେ ଭଗୀରଥ ଆଣିଲା । (୫)

ଏ ଭଗୀରଥୀ କିଏ ? ଗଙ୍ଗାଙ୍କୁ ଆଣିଲେ କାହିଁକି ?

ବିଷ୍ଣୁଦାସ ନାମକ ଜଣେ ମହାନ୍ ଧାର୍ମିକ ବ୍ରାହ୍ମଣ ଥିଲେ । ତାଙ୍କ ଜୀବନ କାଳରେ ଥରେ ମାତ୍ର ବେଶ୍ୟାସଙ୍ଗ ଲାଭ କରିଥିଲେ । ତାଙ୍କ ମୃତ୍ୟୁପରେ ଧର୍ମରାଜ ଯମ ଜାଣିଲେ, ଏ ବ୍ରାହ୍ମଣ ଯେଉଁ ପାପ କରିଛନ୍ତି ତା'ର ପ୍ରାୟଶ୍ଚିତ୍ତ କେବଳ ଶୃଗାଳ ଯୋନିରେ ଜନ୍ମ ହେବା । ଏଣୁ ତାଙ୍କର ଧର୍ମପରାୟଣତା ପାଇଁ ଜାତିସ୍ମର କରାଇ ଶୃଗାଳ ରୂପେ ଜନ୍ମ କରାଇଲେ । ଶୃଗାଳ ରୂପରେ ଥାଇ ବ୍ରାହ୍ମଣ ବିଷ୍ଣୁଦାସ ଥରେ ଗୋଟିଏ କନ୍ୟାକୁ ଶ୍ମଶାନରୁ ଜୀବିତ ଅବସ୍ଥାରେ ପାଇ ତାକୁ ଲାଳନ ପାଳନ କଲା । କିଛିଦିନ ପରେ କନ୍ୟାଟି ଯୌବନପ୍ରାପ୍ତ ହେଲା । ଦିନେ ଶୃଗାଳ ତା'ର ବସାରେ ନାହିଁ । କନ୍ୟାଟି ରଜସ୍ୱଳା ହୋଇ ଗାଧୋଇ କେଶ ଶୁଖାଉଛି, ଏହି ସମୟରେ କାଶୀ ନଗରୀ ମହାରାଜା ମୃଗୟା ଉଦ୍ଦେଶ୍ୟରେ ଯାଉ-ଥିଲେ । କନ୍ୟାର ରୂପଲାବଣ୍ୟରେ ମୁଗ୍ଧ ହୋଇ ସେ ଦିଗକୁ ଘୋଡ଼ା

ଝପଟାଇବାରେ କନ୍ୟାଟି ଭୟରେ ବିବର ମଧ୍ୟରେ ପଶିଗଲା । ରାଜା ସୈନ୍ୟ ଲଗାଇ ବିବର ଖୋଳି କନ୍ୟାଟିକୁ ବାହାର କଲେ ଏବଂ ସ୍ୱ-ରାଜ୍ୟକୁ ନେବାକୁ ଇଚ୍ଛା କଲେ । ଇତି ମଧ୍ୟରେ ଶୃଗାଳ ଆସି ପହଞ୍ଚିଲା । ଶୃଗାଳ କହିଲା, 'ମହାରାଜ ! ଆପଣ ରାଜା ହୋଇ ପ୍ରଜାଙ୍କର ଧର୍ମ ହରଣ କରିବା ବିଧେୟ ନୁହେଁ ।' ରାଜା ପଚାରିଲେ, 'ଏ କନ୍ୟା କାହାର ?' ଶୃଗାଳ ଉତ୍ତର ଦେଲା— 'ଏ କନ୍ୟାଟି ମୋର ।' ରାଜା କହିଲେ, 'ଏ କନ୍ୟାଟି ମୋତେ ଦାନ କର ।' ଶୃଗାଳ କହିଲା, 'ମହାରାଜ ! ଆପଣ ଦାନ ଗ୍ରହଣ କଲେ ମୁଁ କନ୍ୟାଦାନ ଦେବି ।' ରାଜା ସ୍ୱୀକାର କରି ଡଳହସ୍ତ ହେଲେ । ଶୃଗାଳ ଶଙ୍ଖରେ ପାଣି ଟେକି କନ୍ୟା-ଦାନ ଦେଲା । ରାଜା ଆନନ୍ଦରେ କନ୍ୟାଟିକୁ ନେଇଗଲେ ।

ଶୃଗାଳ ଭାବିଲା, କନ୍ୟାଦାନ କରି ଏ ରାଜ୍ୟରେ 'ମୁଁ ଜଳ ସ୍ପର୍ଶ କରିବି ନାହିଁ ।' ଏହା ଭାବି କାଶୀରାଜ୍ୟ ଛାଡ଼ି ଚାଲିଗଲା । ଯାଉଁ ଯାଉଁ ରାସ୍ତାରେ ତୃଷା ହେତୁ ତା'ର ପ୍ରାଣ ଚାଲିଗଲା; ମାତ୍ର ସେ କାଶୀ ରାଜ୍ୟରେ ଜଳ ସ୍ପର୍ଶ କଲାନାହିଁ । ଯମ ବିଚାର କଲେ, 'ଏ ଶୃଗାଳ ଯୋନିରେ କନ୍ୟାଦାନ କରି ଯେଉଁ ଧର୍ମ କରିଛି ଏହାକୁ ଚକ୍ରବର୍ତ୍ତୀ ଜନ୍ମ ଦିଅ ।' ତେଣୁ ଯମଦୂତମାନେ ଅଯୋଧ୍ୟାରେ ରାଜା କରି ଜନ୍ମ ଦେଲେ । ସେ ହେଲେ ମହାରାଜ ସଗର । ସଗର ଜନ୍ମ ହୋଇ ବିଚାର କଲେ, 'ଗୋଟିଏ କନ୍ୟାଦାନ କରି ମୁଁ ସମ୍ରାଟ ହେଲି । ତେବେ ଷାଠିଏ ସହସ୍ର କନ୍ୟା ଦାନ କରି ସମସ୍ତ ପାପ ଖଣ୍ଡନ କରିବି ।' ଏହା ଭାବି ଷାଠିଏ ସହସ୍ର କନ୍ୟା ପାଇବା ଉଦ୍ଦେଶ୍ୟରେ କଠୋର ତପସ୍ୟା କଲେ । ବ୍ରହ୍ମା ସଗରଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଆବିର୍ଭାବ ହେଲେ । ସଗର ବ୍ରହ୍ମାଙ୍କୁ ସମ୍ମୁଖରେ ଦେଖି ବର ମାଗିବାକୁ ତତ୍ପର ହେବା ସମୟରେ ଇନ୍ଦ୍ରଙ୍କ ମାୟାରେ ସରସ୍ୱତୀ ସଗରଙ୍କ କଣ୍ଠରେ ବସି ଷାଠିଏ ସହସ୍ର କନ୍ୟା ପରିବର୍ତ୍ତେ ପୁତ୍ରବର ମାଗିନେଲେ । ବ୍ରହ୍ମା ତଥାସ୍ତୁ କହି ଅନ୍ତର୍ଦ୍ଧାନ ହୋଇ-ଗଲେ । ସଗର ଚିନ୍ତାମଗ୍ନ ହୋଇ ରାଜ୍ୟକୁ ଫେରିଲେ । କିଛିଦିନ ପରେ

ମହାରାଣୀ ଅନ୍ତଃସତ୍ତ୍ୱା ହୋଇ ଗୋଟିଏ ଲାଉ ଜନ୍ମ କଲେ । ସେ ଲାଉଟି ଭାଙ୍ଗିବାରେ ଷାଠିଏ ସହସ୍ର ପୁତ୍ର ଜାତ ହେଲେ । କ୍ରମେ କ୍ରମେ ପିଲାମାନେ ବଢ଼ିବାକୁ ଲାଗିଲେ । ଖାଦ୍ୟ ନ ପାଇ ପିତାଙ୍କୁ ଗୁହାରି କରନ୍ତେ ସଗର କହିଲେ ତୁମେ ମାଟି ଖାଇଯାଅ । ପିତାଙ୍କ ବାକ୍ୟ ମାନି ପିଲାମାନେ ମାଟି ଖାଇ ଖାଇ ପୃଥିବୀରୁ ତିନିଭାଗ ମାଟି ଖାଇଗଲେ । ଦିନେ ଇନ୍ଦ୍ରାଦି ଦେବତାମାନେ ଏ ବିଷୟ ଚିନ୍ତା କରି ନାରାୟଣଙ୍କ ନିକଟରେ ଜଣାଇଲେ । ଭଗବାନ କପିଳ ଅବତାର ଗ୍ରହଣ କରି ପାତାଳପୁରରେ ତପସ୍ୟାରତ ହୋଇ ବସି ରହିଲେ ।

ଏଣେ ସଗର ରାଜା ଅଶ୍ୱମେଧ ଯଜ୍ଞ ଆରମ୍ଭ କରିଛନ୍ତି । ବରଣି ଅଶ୍ୱଟିକୁ ଇନ୍ଦ୍ର ଚୋରି କରି ନେଇ କପିଳ ମୁନିଙ୍କ ପଛରେ ବାନ୍ଧିଦେଲେ । ଯଜ୍ଞ କର୍ମରୁ ନିବୃତ୍ତି ରାଜା ସଗର ଦେଖିଲେ ଅଶ୍ୱଟି ନାହିଁ । ତେଣୁ ପୁତ୍ରମାନଙ୍କୁ ଆଦେଶ ଦେଲେ, 'ଯାଅ, କେଉଁଠାରେ ଅଶ୍ୱ ଅଛି ଖୋଜି ଆଣ ।' ଷାଠିଏ ହଜାର ରାଜପୁତ୍ର ଅଶ୍ୱ ଖୋଜି ଖୋଜି କପିଳଙ୍କ ନିକଟରେ ପହଞ୍ଚିଲେ । ମୁନିଙ୍କ ପଛରେ ଅଶ୍ୱଟିକୁ ଦେଖି ସମସ୍ତେ ଭାବିଲେ ଏ ଚୋର ଅଶ୍ୱ ଚୋରିକରି ଏଠାରେ ବସିଛି । ଏହାଭାବି ପୁତ୍ରମାନେ କପିଳଙ୍କୁ ମାଡ଼ମାରି ଦାଢ଼ି ନିଶ ଟାଣି ଦଣ୍ଡ ଦେଲେ । କପିଳ ଯୋଗରୁ ଉଠି କ୍ରୋଧ ନେତ୍ରରେ ଚାହିଁବାରେ ସେମାନେ ଜଳିଗଲେ । କପିଳ ଅଭିଶାପ ଦେଲେ, 'ତୁମେମାନେ ଏହିପରି ଜଳି ପାଉଁଶ ହେଉଥିବ । ପୁଣ ଶରୀର ଧରୁଥିବ; ପୁଣି ପାଉଁଶ ହେଉଥିବ । ତୁମର ମୁକ୍ତି ନାହିଁ । ବ୍ରହ୍ମ ଅଭିଶାପ ପାଇ ଷାଠିଏ ସହସ୍ର ପୁତ୍ର ଜଳୁଛନ୍ତି ।

ସଗରଙ୍କ କନିଷ୍ଠ ପୁତ୍ର ସଞ୍ଜମନ । ତା'ର ପତ୍ନୀ ଥିଲେ ଅନ୍ତଃସତ୍ତ୍ୱା । ପୁତ୍ରଟିଏ ଜନ୍ମ ହେଲା । ତା'ର ନାମ ଦେଲେ ଅସମଞ୍ଜ । ଅସମଞ୍ଜ ମୃଗୟାକୁ ଆସି ପିତୃଗଣଙ୍କର ଏ ଦୁର୍ଦ୍ଦଶା ଦେଖି କପିଳଙ୍କୁ ପ୍ରାର୍ଥନା କଲେ । କପିଳ କହିଲେ, 'ଯଦି ତୁମେ ସ୍ୱର୍ଗରୁ ଗଙ୍ଗାକୁ ଆଣିପାରିବ;

ତେବେ ଏମାନେ ମୁକ୍ତ ହେବେ ।' ଅସମଞ୍ଜ ହିମାଳୟରେ ବସି କଠୋର ତପସ୍ୟା କରି କରି ଦେହାନ୍ତ ହେଲେ । ଅସମଞ୍ଜଙ୍କର ଦୁଇପତ୍ନୀ ଯୁବତୀ ବଂଶରକ୍ଷା ଚିନ୍ତା କରି ଦୁଇଗଣୀ ଉଦ୍ଦାଳକଙ୍କୁ ସେବା କଲେ । ଉଦ୍ଦାଳକ ସନ୍ତୋଷ ହୋଇ ବର ଯାଚିଲେ । ଦୁଇଗଣୀ କହିଲେ, 'ହେ ମହର୍ଷି ! ଆମର ସତୀତ୍ୱ ନଷ୍ଟ ନହୋଇ ବଂଶ କିପରି ରକ୍ଷା ହେବ ?' ଋଷି ଉଦ୍ଦାଳକ କହିଲେ, 'ତୁମେ ଦୁଇଗଣୀ ପ୍ରଣୟ କର ନିଶ୍ଚୟ ସନ୍ତାନ ଜନ୍ମ ହେବ ।' ଋଷି ବାକ୍ୟ ମାନି ଦୁଇଗଣୀ ପ୍ରଣୟ କରନ୍ତେ ଉଦ୍ଦାଳକଙ୍କ ବରରେ ପୁତ୍ରଟିଏ ଉତ୍ପତ୍ତି ହେଲା । କିନ୍ତୁ ବ୍ରହ୍ମ ନଥାଇ ରେତରୁ ଜନ୍ମ ହେବାରୁ ଅସ୍ଥି ନଥାଇ କେବଳ ମାଂସ ଶରୀର ଧରି ପୁତ୍ରଟିଏ ବଞ୍ଚିଥାଏ । କିଛିଦିନ ବିତିଗଲା । ପୁତ୍ରଟି ଦାଣ୍ଡରେ ଖେଳୁଛି । ମାଂସ ଶରୀର ଯୋଗୁ ଢଳି ଢଳି ଗ୍ଲୁଛି । ମହର୍ଷି ଅଷ୍ଟବକ୍ର ସେ ପଥରେ ପହଂଚିଲେ । କୁମାରକୁ ଦେଖି ଅଷ୍ଟବକ୍ର କହିଲେ, 'ରେ କୁମାର, ତୁ ମୋତେ ଥଟ୍ଟା କରି ଏପରି ଗ୍ଲୁଛୁ । ଯେବେ ଥଟ୍ଟା କରୁଥାଉ ତେବେ ଭସ୍ମ ହୋଇଯାଅ । ନଚେତ୍ ଦିବ୍ୟ ସୁନ୍ଦର ରୂପ ଧରି ବିଦ୍ୟମାନ ହୁଅ ।' ସ୍ୱଭାବ ସୁଲଭ ରୂପ ଧରି କୁମାର ଦଣ୍ଡାୟମାନ ହେଲା । ତା'ର ନାମ ଥିଲା ଭଗୀରଥ । ଭଗୀରଥ ଦିନେ ମୃଗୟାକୁ ଯାଇ ଦେଖିଲେ ଷାଠିଏ ସହସ୍ର ଗଜପୁତ୍ର ଜଳୁଛନ୍ତି । ନିକଟରେ ଜଣେ ତପସ୍ୱୀ ତପସ୍ୟା କରୁଛନ୍ତି । ଭଗୀରଥ ଏ ଦୃଶ୍ୟ ଦେଖି କପିଳଙ୍କୁ ସେବା କରି ଏହାର କାରଣ ପଚ୍ଚରି ବୁଝିଲେ । ନିଜର ପିତୃ-ପୁରୁଷ ଜାଣି କଠୋର ତପସ୍ୟା କରି ବ୍ରହ୍ମାଙ୍କୁ ସନ୍ତୋଷ କରାଇଲେ । ବ୍ରହ୍ମା ଆବିର୍ଭାବ ହୋଇ ବର ଯାଚିଲେ । ଭଗୀରଥ କହିଲେ, 'ହେ ବ୍ରହ୍ମନ୍ ! ମୋତେ ଗଙ୍ଗାଙ୍କୁ ଦଅ ।' ବ୍ରହ୍ମା କହିଲେ, 'ଗଙ୍ଗା ବର୍ତ୍ତମାନ ବିଷ୍ଣୁଙ୍କର ନଖକୋଣରେ ଅଛନ୍ତି । ଭଗୀରଥ ପୁଣି ବିଷ୍ଣୁଙ୍କୁ ଆରାଧନା କଲେ । ବିଷ୍ଣୁ ଆବିର୍ଭାବ ହୋଇ ଭଗୀରଥଙ୍କୁ ଗଙ୍ଗାଙ୍କୁ ଦେଲେ । ଗଙ୍ଗା ବିଷ୍ଣୁଙ୍କର ନଖକୋଣରୁ ଝରି ମନ୍ଦାକିନୀ ନାମରେ ସ୍ୱର୍ଗରେ ରହିଲେ । ଭଗୀରଥ ଯେତେ ବିନତି କଲେ ଗଙ୍ଗା ମର୍ତ୍ତ୍ୟପୁରକୁ ଆସିଲେ ନାହିଁ । କହିଲେ, 'ହେ ଭଗୀରଥ, ମୁଁ ସ୍ୱର୍ଗପୁର ଛାଡ଼ି ମର୍ତ୍ତକୁ ଅବତରଣ କରିବା ମାତ୍ରେ ପୃଥିବୀ ରସାତଳଗାମୀ ହୋଇଯିବ । ମୋତେ

ମର୍ତ୍ତ୍ୟପୁରକୁ ନେବାକୁ ହେଲେ କିଏ ସେ ଧାରଣ କରିବ । ପୃଥିବୀରେ ଏକମାତ୍ର ଶକ୍ତି ଶିବ । ସେ ଯଦି ମୋତେ ଧାରଣ କରିବେ ତେବେ ମୁଁ ପୃଥିବୀ ବକ୍ଷରେ ବିଚରଣ କରିବି ।' ଏହା ଶୁଣି ଭଗୀରଥ ଶିବଙ୍କୁ ଧ୍ୟାନ କଲେ । ଶିବ ଭଗୀରଥଙ୍କ କଥାରେ ଗଙ୍ଗାଙ୍କୁ ଧରିବା ପାଇଁ ସମ୍ମତି ଦେବାରେ ଭଗୀରଥ ଗଙ୍ଗାଙ୍କ ନିକଟକୁ ଯାଇ ଜଣାଇଲେ । ଶିବ ଜଟା ଫିଟାଇ ଦେଲେ । ସ୍ୱର୍ଗପୁରରୁ ଗଙ୍ଗାଦେବୀ ଶିବଙ୍କ ମସ୍ତକକୁ ଅବତରଣ କଲେ । ଶିବ ଶୀତଳତାପ ପାଇ ଜଟାକୁ ବାନ୍ଧି ଦେବାରେ ଗଙ୍ଗା ଶିବଙ୍କ ମସ୍ତକରେ ରହିଗଲେ । ଶିବ ତପସ୍ୟାମଗ୍ନ ହୋଇ ବସି ପଡ଼ିଲେ । ଭଗୀରଥ ଶିବଙ୍କୁ ପୁନରାୟ ଆରାଧନା କରିବାରେ ଶିବ ଗୋଟିଏ ଧାର ଗଙ୍ଗାଙ୍କୁ ଛାଡ଼ିଦେଲେ । ଭଗୀରଥ ଗଙ୍ଗାଙ୍କୁ ନେଇ ଆସିଲେ । ବାଟରେ କ୍ରୌଞ୍ଚ ପର୍ବତର କୋଟର ମଧ୍ୟରେ ଗଙ୍ଗା ପଡ଼ିଗଲେ । ବାହାରକୁ ଆସିବାକୁ ରାସ୍ତା ନାହିଁ । ଗଙ୍ଗାଙ୍କ ଏପରି ଅବସ୍ଥାରେ ଦେଖି ଭଗୀରଥ ଗଙ୍ଗାଙ୍କୁ ପ୍ରାର୍ଥନା କରିବାରୁ ଗଙ୍ଗା କହିଲେ, 'ମୋର କୌଣସି ଆୟତ୍ତ ନାହିଁ । ତୁମେ ମୋତେ ଏ କୋଟର ଭିତରୁ ବାହାର କରିବାକୁ ଐରାବତକୁ ଆଣ ।' ଭଗୀରଥ ଇନ୍ଦ୍ରଙ୍କୁ ଆରାଧନା କରି ଐରାବତକୁ ମାଗି ଆଣିଲେ । ଐରାବତ କହିଲେ, 'ହେ ରାଜନ୍, ତୁମେ ଯାଇ ଗଙ୍ଗାଙ୍କୁ କହିବ ସେ ମୋର ଅଙ୍କଶାୟିନୀ ହେଲେ ମୁଁ ତାଙ୍କୁ ଉଦ୍ଧାର କରିବି ।' ଭଗୀରଥ ଆସି ମାତା ଗଙ୍ଗାଙ୍କ ନିକଟରେ ଏକଥା କହି ନପାରି ମୌନ ହୋଇ ବସି ରହିଲେ । ଗଙ୍ଗା ଐରାବତର ମନୋଭାବ ଜାଣି ଭଗୀରଥଙ୍କୁ କହିଲେ, 'ହେ ରାଜନ୍ ! ତୁମେ ଚିନ୍ତା ନକରି ଯାଅ । ଐରାବତକୁ କହିବ ସେ ଯଦି ମୋର ତିନି ଧକ୍କା ସହିବ ତେବେ ମୁଁ ତାର ପ୍ରେୟସୀ ହୋଇ ରହିବି ।' ଭଗୀରଥ ଆନନ୍ଦରେ ଯାଇ ଐରାବତକୁ ଜଣାଇଲେ । ଐରାବତ ଗର୍ବରେ ଆସି କ୍ରୌଞ୍ଚ ପର୍ବତରେ ଦନ୍ତାଘାତ କଲା । ତାର ଚାରୋଟି ଦାନ୍ତ । ଗୋଟିଏ ଦାନ୍ତ ଭାଜିଯାଇ ପର୍ବତରେ ଲାଗି ରହିଲା ଏବଂ ତିନୋଟି ଦାନ୍ତ ଫୁଟି ତିନିଧାରରେ ଗଙ୍ଗା ବହି ଆସିଲେ । ଏପରି ପ୍ରଖର ସ୍ରୋତ ହେଲା ଯେ ଐରାବତକୁ ଗଡ଼ାଇ ଗଡ଼ାଇ ଶତ ଯୋଜନ ଦୂରରେ

ପକାଇଲା । ଯେଉଁଠି ଐରାବତ ହସ୍ତୀ ଉଦ୍ଧାର ପାଇଲା, ସେ ସ୍ଥାନର ନାମ ହେଲା ହସ୍ତୀନା । ଭଗୀରଥ ଗଙ୍ଗାଙ୍କୁ ନେଇ ଗ୍ଭଲିଲେ । ଗଙ୍ଗା ସେଠାରେ ତିନି ନାମ ଧାରଣ କଲେ ଗଙ୍ଗା, ଯମୁନା ଓ ସରସ୍ୱତୀ । ପୁଣି ତିନିଧାର ଏକତ୍ର ହେଲେ । କିଛି ବାଟ ଯିବାପରେ ଗଙ୍ଗା ପଥଭ୍ରଷ୍ଟ ହୋଇ ଭଗୀରଥଙ୍କୁ କହିଲେ, 'ତୁମେ କୌଣସି ସଙ୍କେତ ଦେଇ ଗ୍ଭଲ । ମୁଁ ତୁମ ଅନୁଗମନ କରିବି । ତେଣୁ ଭଗୀରଥ ଗୋଟିଏ ବେଣୁ ବଜାଇ ଗ୍ଭଲିଲେ । ଗଙ୍ଗା ତାଙ୍କ ପଛେ ପଛେ ଗ୍ଭଲିଲେ । ସେହିଠାରୁ ଗଙ୍ଗା ନାମ ହେଲା ବେଣୁବତୀ । କିଛି ବାଟ ଯିବା ପରେ ଜଣେ ଶୁଣ୍ଡୀ ସ୍ତ୍ରୀ ଗଙ୍ଗାଙ୍କୁ ଦେଖି ତା'ର ସୁରାଭାଣ୍ଡରେ ଭରି ଗ୍ଭଲିଗଲା । ଭଗୀରଥ ଗଙ୍ଗାଙ୍କୁ ନ ଦେଖି ସତୀ ଶୁଣ୍ଡୀ ସ୍ତ୍ରୀଙ୍କୁ ପ୍ରାର୍ଥନା କରିବାରେ ସେ ସଦୟ ହୋଇ ଗଙ୍ଗାଙ୍କୁ ଢ଼ାଳିଦେଲେ । ସେଠାରୁ ଗଙ୍ଗା ନାମ ହେଲା ସୁରେଶ୍ୱରୀ । ପୁଣି କିଛି ବାଟ ଯିବା ପରେ ଗଙ୍ଗା ଅତ୍ରି ମହର୍ଷିଙ୍କ ଆଶ୍ରମ ଭସାଇ ଦେଲେ । ଅତ୍ରି ଏହା ଦେଖି ଗଂଗାଙ୍କୁ ଚଳୁ କରିଦେଲେ । ଭଗୀରଥ ଅତ୍ରିଙ୍କୁ ପ୍ରାର୍ଥନା କରିବାରେ ଅତ୍ରି ଜାନୁ ଚିରି ଗଂଗା ଦେବୀଙ୍କୁ ଛାଡ଼ିଦେଲେ । ସେହିଠାରୁ ଗଂଗାଙ୍କର ନାମ ହେଲା ଜାହ୍ନବୀ । ଭଗୀରଥ କିଛିବାଟ ଯାଇ କହିଲେ, 'ମା ! ମୋର ଏ ଅକ୍ଳାନ୍ତ ପରିଶ୍ରମର ଫଳସ୍ୱରୂପ ମର୍ତ୍ତ୍ୟ-ମଣ୍ଡଳରେ ମୋର କୀର୍ତ୍ତି କିପରି ରହିବ ? ଏହାଶୁଣି ଗଙ୍ଗା ସେଠାରୁ ଭଗୀରଥୀ ଗଙ୍ଗା ନାମ ଧାରଣ କଲେ । ତା ପରେ ତିନି ନଦୀ ଏକତ୍ର ହୋଇ ତ୍ରିବେଣୀ ନାମ ଧାରଣ କରି ସେଠାରୁ ପାତାଳୀ ହୋଇ ରଜା ଭଗୀରଥଙ୍କ ପୂର୍ବ ପୁରୁଷମାନଙ୍କୁ ଉଦ୍ଧାର କରିଥିଲେ ।

—ରାମାୟଣ ଓ ଗଙ୍ଗାମାହାତ୍ମ୍ୟ

୨୨ ପଦ—

**ବୃକୋଦର ବାସବର ଦ୍ୱିରଦନ୍ତୀ ମନୋହର**
**ବହିର-ମଖଶାଳାରେ ପ୍ରବେଶବେଳେ,**
**କଂଶିକ-ରାଜାମାନସ ମଧ୍ୟରୁ ଧୈର୍ଯ୍ୟ ସାହସ**
**ଅମ୍ବରଙ୍କେ ଦରଶନେ ଉତ୍ପାଟି ନେଲେ ।**
**ବିଚିତ୍ର-କର୍ମାଙ୍କ ଆଲେଖ୍ୟକେ,**
**ବିଦେହବରଜ କୌଶିକେ ପଚ୍ଛିଲେ ଏକେ ? ॥ ୨୨ ॥**

ଯମ—ବୃକୋଦର ପଦବାଚ୍ୟ କାହିଁକି ?

ପୁରାଣରେ ଅଛି ସଂଜ୍ଞାଦେବୀ ନିଜ ଦେହରୁ ଛାୟାଙ୍କୁ ଜାତ କରି ସୂର୍ଯ୍ୟଙ୍କ ତାପ ସହି ନପାରି ଖଲିଯିବାରେ ଛାୟାଦେବୀ ସଂଜ୍ଞାଙ୍କର ରୂପ ଧରି ସୂର୍ଯ୍ୟଙ୍କ ନିକଟରେ ରହିଲେ । ତାଙ୍କ ଗର୍ଭରୁ ସନ୍ତାନ ଜାତ ହେବାରେ ସଂଜ୍ଞାଙ୍କ ସନ୍ତାନମାନଙ୍କ ପ୍ରତି ଅବହେଳା କଲେ । ଦିନେ ଯମ ରାଗିଯାଇ ମା' ଙ୍କୁ ପଦାଘାତ କରିବାରେ ଛାୟା ଅଭିଶାପ ଦେଲେ, 'ତୋ ପାଦରେ କୁଷ୍ଠବ୍ୟାଧି ହେଉ ।' ଯମ କୁଷ୍ଠବ୍ୟାଧିରେ ପୀଡ଼ିତ ହେଲେ । ସୂର୍ଯ୍ୟ ଯମଙ୍କର ଏ ଦୁର୍ଦ୍ଦଶା ଦେଖି ବୃକ୍ ଅନଳଙ୍କୁ ନିଜ ଦେହରୁ ଜାତ କରି ଯମଙ୍କର ନେତ୍ରରେ ରଖିଦେଲେ ଏବଂ କହିଲେ, 'ତୁମେ ଗୋଟିଏ ପାଦକୁ ଚାହିଁବ ସେ ପାଦଟି ଜଳିଯିବ । ପୁଣି ଅପର ପାଦକୁ ଚାହିଁବ ସେ ପାଦଟି ଜଳିଲା ବେଳକୁ ଅପର ପାଦଟି କଅଁଳି ଉଠୁଥିବ । ତୁମକୁ ଲୁଦ୍‌ବୁଦ୍ ବ୍ୟାଧି କୌଣସି ଯନ୍ତ୍ରଣା ଦେଇ ପାରିବ ନାହିଁ । ଆଜିଠାରୁ ମୁଁ ଏହି ଅଭିଶାପ ଦେଉଛି । ମା' ଅଭିଶାପ ପିଲମାନଙ୍କୁ କୌଣସି ସମୟରେ ପଡ଼ିବ ନାହିଁ, ଏବଂ ତୁମେ ବୃକ୍ ଅନଳ ଧାରଣ କରି ବୃକୋଦର ନାମ ବହନ କର ।'

—ଯମପୁରାଣ, ସୂର୍ଯ୍ୟପୁରାଣ

୨୪ ପଦ—

ବାଳୀ ବକ୍ଷସ୍ଥଳେ ଯାଇ ଲକ୍ଷ କୋଟିଏ ସଂହର
ଭାଙ୍ଗିବା ଆଉ ଭାଜନା ଶୁଣି ଛଳନ୍ତି,
ବର୍ଷ୍କି ଟର ଗଣ୍ଡ ଭେଉଣ୍ଡେ ଗଜକୁ ଘୋଷଣ ଉଡ଼େ
ଡାକେ ବଟେ, ଭାରତୀରେ ଭଗ୍ନ ବହନ୍ତ ।
ବୋଲେ ପର୍ଶୁରାମ ପୂଜଲେ,
ବ୍ୟଭିଗ୍ରହ ଷଣ୍ଡ ଧର୍ମ ବପ୍ର ବୋଇଲେ ॥ ୨୪ ॥

ବିଷୟରେ ଗଣ୍ଡ ଭେରଣ୍ଡେ—

ଗଜକୁ ଧରି ଉଡ଼ିଲା କିଏ ଏବଂ କେଉଁ ବେଳେ ?

ଗଜ କଚ୍ଛପ ଯୁଦ୍ଧରେ ପୃଥିବୀ ଅସହ୍ୟ ହୋଇ ନାରାୟଣଙ୍କୁ ପ୍ରାର୍ଥନା କରନ୍ତେ ନାରାୟଣ ଗରୁଡକୁ ପଠାଇଲେ । ଗରୁଡ ଗଜ କଚ୍ଛପଙ୍କୁ ଦୁଇ ପାଦରେ ଧରି ଖାଇବା ପାଇଁ ସାଗର ତଟ ମହାବଟ ଡାଳରେ ବସିଲା । ସେତେବେଳକୁ ଯାଏ ସେ ଡ଼ାଳଟି ସମ୍ଭାଳି ଥିଲା । କିନ୍ତୁ ବ୍ରହ୍ମ ଅଭିଶାପ ଗ୍ରସ୍ତ ଉଦଭଦଳିଆ ଜନ୍ମ ହୋଇଥିବା ତାର୍ଯ୍ୟକ୍ ଆସି ସେ ଡାଳରେ ବସି ପଡ଼ିବାରେ ଡାଳଟି ଭଙ୍ଗିଗଲା । ଗରୁଡ଼ ଦେଖିଲା ତଳେ ବହୁତ ଋଷି ତପସ୍ୟା କରୁଛନ୍ତି । ଏଣୁ ଡ଼ାଳଟିକୁ ଥଣ୍ଟରେ ଧରି ଉଡ଼ିଲା । କିଛି ବାଟ ଯାଇ ନିଶାଦ ନଗରୀକୁ ଦେଖି କ୍ରୋଧରେ ପକ୍ଷାଘାତ ଦ୍ୱାରା ସେ ନଗରୀକୁ ଭଙ୍ଗି ଚିଲିକାରେ ପରିଣତ କଲା । ପୂର୍ବରୁ ମା ବିନତାଙ୍କୁ ଏ ନଗର ବାସୀ ଉପହାସ କରିଥିଲେ । ତେଣୁ ମାତୃଋଣ ପରିଶୋଧ କଲାପରେ ବିନ୍ଧ୍ୟ ପର୍ବତରେ ଗରୁଡ ଗଜ କଚ୍ଛପଙ୍କୁ ମାରି ଖାଇଲା ।

—ଗରୁଡ଼ ପୁରାଣ—

* *
*

୩୫ ପଦ—

ବଚନ୍ତେ, ଗଳି, ରାଜନୟଙ୍କ ବଚନ୍ତେ, ଜନକ ଜନକ
ଏହ୍ୱଗର ଶରଭେଦ ହୃଦୟ କରେ,
ବିଜୟୀ ଏ ତ୍ରିପୁରର ବିଜୟୀ ଏ ତ୍ରିପୁରର
ଧଇଲା ଧଇଲା ଧନୁ ଅନାୟାସରେ ।
ବଦ୍ଧାବକୁ ଲଜ୍ଜାରେ ଭଳି,
ବପଲକେ ଅନାଇଲେ ନପାରେ ଚଳି ।। ୩୫ ।।

ବିଜୟୀ ଏ ତ୍ରିପୁରର—ତାତ୍ପର୍ଯ୍ୟ କ'ଣ ?

ତ୍ରିପୁରାସୁରକୁ ମାରିବା ପାଇଁ ଶିବ କୌଣସି ଉପାୟ ନପାଇବାରୁ ସତୀଙ୍କ ଦାହ ପରେ ଦକ୍ଷ ଯଜ୍ଞ କୁଣ୍ଡରୁ ଗୋଟିଏ ବାଉଁଶ ଗଛ ଉଠି

ହେଲା । ସେ ବାଉଁଶଟି ୩୭ ପବ ବିଶିଷ୍ଟ । ସେଥିରେ ପାଞ୍ଚଟି ଧନୁ, ଗୋଟିଏ ବଂଶୀ ଓ ଗୋଟିଏ ବେଣୁ ନିର୍ମାଣ କରାଗଲା । ଯଥା—୧୧ ପବରେ ଶିବ ଧନୁ । ୯ ପବରେ ପିନାକ, ୭ ପବରେ ସାରଙ୍ଗ, ୫ ପବରେ କୋଦଣ୍ଡ, ୩ ପବରେ ଗାଣ୍ଡିବ, ୧ ପବରେ ବଂଶୀ ଓ ୧ ପବରେ ବେଣୁ ନିର୍ମିତ ହେଲା । ସେ ଶିବ ଧନୁକୁ ଶିବ ଧାରଣ କରି ତ୍ରିପୁରାସୁରଙ୍କୁ ବିନାଶ କଲେ । ଦ୍ୱିତୀୟ ବାର ସେ ଧନୁ ଉତ୍ତୋଳନ କରିବାକୁ ସମର୍ଥ ନ ହୋଇ ସେହି ଧନଟି ଜନକଙ୍କୁ ଦେଇଥିଲେ ଏବଂ କହିଥିଲେ, 'ଏ ଧନୁ ଯେଉଁ ବୀର ଟେକିବ ସେ ପରମେଶ୍ୱର ବୋଲି ଜାଣିବ । ତାଙ୍କ ହସ୍ତରେ ତୁମର ପାଳିତା କନ୍ୟାକୁ ଅର୍ପଣ କରିବ ।' କେତେକ ପୁରାଣରେ ଉଲ୍ଲେଖ ଅଛି ଯେ, ଉପର୍ଯ୍ୟୁକ୍ତ ବାଉଁଶଟି ଶ୍ୱେତ ରାଜାଙ୍କ ଯଜ୍ଞ କୁଣ୍ଡରୁ ଜାତ ହୋଇଛି ।

—ଶିବପୁରାଣ—

—*—

## ଦଶମ ଛାନ୍ଦ

ପଞ୍ଚମ ପଦ—

ବତୁଲ ମଥାମଣି ମାଣିକ୍ୟର,
ବନ୍ଧୁରାଗ ସୀମନ୍ତ ସିନ୍ଦୂର ଧାର
ବନ୍ଧ ବସ୍ତ୍ରେ ଭଙ୍ଗି ପାଟ ସୂତରେ,
ବଧୂ ନ୍ତୁଢ଼ ଗଣ୍ଡ ମନ୍ଦ୍ର ହସ୍ତରେ ବ୍ୟସ
ଭୃଙ୍ଗକଣେ କବା ପଡ଼ିଯେ,
ବକୁଳ ଗର୍ଭକ ସୁଧା ଲୁଦ୍ଧ ଗାଲୁଛି
ଭୟରୁ ନଦେଇ ଛାଡ଼ ଯେ ।। ୫ ।।

ବିଧୁନ୍ତୁଦ ଗଳ ମିତ୍ର ହସ୍ତରେ–

ଯେତେବେଳେ ଦେବତା ଅସୁର ମିଶି ସାଗର ମନ୍ଥନ କଲେ, ସମସ୍ତ ଜିନିଷ ଯିଏ ଯାହା ନେବାର କଥା ନେଇଗଲେ । ଶେଷରେ ଅମୃତ ଓ ସୁରା ରହିଲା ଅମୃତ ପାଇଁ ଦେବ ଦାନବଙ୍କର କଳହ ହେବାରୁ ନାରାୟଣ ମୋହିନୀ ବେଶରେ ଆବିର୍ଭୂତ ହେଲେ । ସେ ରୂପମାଧୁରୀ ଅବଲୋକନ କରି ଦେବାସୁର ସମସ୍ତେ ବଶୀଭୂତ ହୋଇଗଲେ । ମୋହିନୀ ରୂପୀ ନାରାୟଣ ସମସ୍ତଙ୍କୁ ସାନ୍ତ୍ୱନା ଦେଇ ଦେବତା ଓ ଅସୁରଙ୍କୁ ଦୁଇ ଧାଡ଼ି କରି ବସାଇଦେଲେ ।ନିଜେ ଅମୃତ କଳସୀ ଧରି ପ୍ରଥମେ ଦେବତା ମାନଙ୍କୁ ପରଶିଲେ । ରାକ୍ଷସ ରାହୁ ମୋହିନୀଙ୍କ ମନୋଭାବ ଜାଣି ନିଜ ରୂପ ପରିବର୍ତ୍ତନ କରି ଚନ୍ଦ୍ର ଏବଂ ସୂର୍ଯ୍ୟଙ୍କ ମଝିରେ ବସିଗଲା । ମୋହିନୀ ଅମୃତ ପରଶି ଗଲାବେଳେ ରାହୁ ହସ୍ତରେ ଯେମିତି ଅମୃତ ଦେଇଛନ୍ତି ରାହୁ କାହାକୁ ଅପେକ୍ଷା ନକରି ଗଳାକୁ କ୍ଷେପଣ କଲା । ଚନ୍ଦ୍ର ଏବଂ ସୂର୍ଯ୍ୟ ଜାଣି ପାରିଲେ—ଏ ରାକ୍ଷସ । ଏଣୁ ମୋହିନୀଙ୍କୁ ଆଖିଠାର ଦ୍ୱାରା ଜଣାଇ ଦେବାରେ ଭଗବାନ ସୁଦର୍ଶନ ଦ୍ୱାରା ରାହୁର ମୁଣ୍ଡଟି କାଟିଦେଲେ । ଅମୃତ ପାଇଥିବାରୁ ସେ ଦୁଇ ଭାଗ ହୋଇ ରାହୁ ଓ କେତୁ ନାମରେ ରହିଲେ । ଚନ୍ଦ୍ର ଓ ସୂର୍ଯ୍ୟଙ୍କ ପ୍ରତି ଆକ୍ରୋଶ ରଖି ଗ୍ରାସ କରିବାକୁ ଲାଗିଲେ । କବି ଏଥିପାଇଁ ଉତ୍ପ୍ରେକ୍ଷା କଲେ–ଦୈବବଶତଃ ସୂର୍ଯ୍ୟଙ୍କ କରଟି ରାହୁର ତୋଟିରେ ପଡ଼ିଯିବାରୁ ସେ ପିଇଥିବା ଅମୃତଗୁଡ଼ାକ ବାନ୍ତି କରୁ ଅଛି କି ?

—ବ୍ରହ୍ମାଣ୍ଡପୁରାଣ—

## ଏକାଦଶ ଛାନ୍ଦ

୨୦ ପଦ–

**ବିଭ୍ରମଙ୍ଗଳ କାଲି ପର କଇବା**

**ବିଶ୍ୱାମିତ୍ରେ କହେ ଜନକ,**

**ବିରୋଧିଲେ ଶୁଣି ସେ ବାଣୀ ଲକ୍ଷ୍ମଣ**

**କି ବିଭ୍ର ନ ଜାଣି ଜନକ,**

ବହତୁ, ବହନ ସତାନନ୍ଦ ହେଲେ,
ବଂଶପଦେ ଏଣୁ ଶୋଷଣାୟୀ
ଚିନ୍ତି ଉପେନ୍ଦ୍ର ଭଞ୍ଜ କହିଲେ ॥ ୬୦ ॥

ବହତ୍ ବହନ ସତାନନ୍ଦ ହେଲେ—

ଅହଲ୍ୟା ଗୌତମଙ୍କ ଅଭିଶାପ ପାଇ ପଥର ହେବା ପୂର୍ବରୁ ତାଙ୍କର ଏକମାତ୍ର ପୁତ୍ର ସତାନନ୍ଦ ଜନକଙ୍କ ମନ୍ତ୍ରୀ ହୋଇଥିଲେ । ରାମଚନ୍ଦ୍ର ଅହଲ୍ୟାଙ୍କୁ ମୋକ୍ଷଦାନ ଦେଇଥିବା ଖବର ଶୁଣି ସତାନନ୍ଦ ମାତୃରଣ ଶୁଝିବା ପାଇଁ ଦୂତ ହୋଇ ଅଯୋଧ୍ୟା ନଗରୀକୁ ଯାଇଥିଲେ ।

—ରାମାୟଣ—

—※—

## ଦ୍ୱାଦଶ ଛାନ୍ଦ

୮ମ ପଦ—

ବଗ୍ରହଯାକ ହିଁ ଯାଇଛୁ ପୋଡ଼ା,
ବଗ୍ରହ ମୋତେ ସେ ସେଭଳି ଲୋଡ଼ା ।
ବାମଲୋଚନା ବୋଲି ଛାଡ଼ନାହିଁ
ବାମ ମାର୍ଗରେ ଯୋଗ ଭଙ୍ଗ ଧ୍ୟାୟୀ ।

ବିହଗ ଯୋଡ଼ାଏ । ବିହଙ୍କ ପଣି ଏକାକୀ ପାଡ଼ାଏ ।

ସତୀଦାହ ପରେ ଶିବ ଯୋଗମଗ୍ନ ହୋଇ ବସି ରହିଲେ । ସେ ସମୟରେ ତାରକା ନାମକ ଗୋଟିଏ ଦୁର୍ଦ୍ଦାନ୍ତ ଅସୁର ତପସ୍ୟା କରି ବ୍ରହ୍ମାଙ୍କଠାରୁ ବର ପାଇଲା । ଶିବଙ୍କ ଔରସଜାତ ପୁତ୍ରଦ୍ୱାରା ତାର ମୃତ୍ୟୁ ହେବ । ଦୈତ୍ୟ ତାରକାର ଉପଦ୍ରବ ସହି ନପାରି ଦେବତାମାନେ କନ୍ଦର୍ପକୁ ଶିବଙ୍କର ଯୋଗ ଭଙ୍ଗିବା ପାଇଁ କହିଲେ । କନ୍ଦର୍ପ ଗର୍ବର ସହ ଶିବଙ୍କ ଯୋଗ ଭଙ୍ଗିବାରୁ ତାଙ୍କ କୋପାନଳରେ ଜଳି ପାଉଁଶ

## ପଞ୍ଚଦଶ ଛାନ୍ଦ

ହୋଇଗଲେ । ପରେ ରତି ବିଳାପକରି ଶିବଙ୍କୁ ପ୍ରାର୍ଥନା କରିବାରେ ଶିବ କହିଲେ, 'ବର୍ତ୍ତମାନଠାରୁ କନ୍ଦର୍ପ ଅନଙ୍ଗ ହୋଇ ରହିବ ।'

—ଶିବଧନୁଗଣ ଓ କୁମାର ସମ୍ଭବ—

୧୫ ପଦ—

ବଇଦର୍ଭୀ ଚତୁରୀ ପ୍ରକାଶିତ,
ଜଟେ ସଂଯୋଗୀ ପତି ରଘୁସୁତ ।
ବସ୍ତ୍ର ପାତ ଚନ୍ଦ୍ର ପଦ୍ମ ହୃଦରେ,
ବାହ୍ୟ ନ ଦଣ୍ଡି ରଖିଲେ ଭିତରେ ।

× × × × ×

ବଇଦର୍ଭୀ ଚତୁରୀ ପ୍ରକାଶିତ—

ବିଦର୍ଭ ରାଜକନ୍ୟା ରୁକ୍ମିଣୀ ବର ରୂପରେ ଆସିଥିବା ଶିଶୁପାଳଙ୍କୁ ପ୍ରତ୍ୟାଖ୍ୟାନ କରି ଶ୍ରୀକୃଷ୍ଣଙ୍କୁ ବରଣ କରିବେ । ସୀତା ସେହିକଥା ପ୍ରକାଶ କରିଥିଲେ ।

— ଶ୍ରୀମଦ୍‌ଭାଗବତ (ଦ୍ୱାରକାଲୀଳା)

—ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର

* * *

## ଷୋଡ଼ଶ ଛାନ୍ଦ

୨୫ ପଦ—

ବିଶ୍ୱାମିତ୍ର ଶ୍ରବଣରେ କଲେ ପ୍ରତିଭାଷ ।
ବିନାଶ ତହିଁ ଉତ୍ପତ୍ତି ଯହିଁରୁ ନ ଘୋଷ ଯେ ॥ ୨୫ ॥

ବିନାଶ ତହିଁ ଉତ୍ପତ୍ତି ଯହିଁରୁ ନ ଘୋଷ ଯେ—

ଯମଦଗ୍ନିଙ୍କ ପୁତ୍ର ପର୍ଶୁରାମ । ଯେତେବେଳେ କାର୍ତ୍ତବୀର୍ଯ୍ୟ ଯମଦଗ୍ନିଙ୍କ ଆତିଥ୍ୟ ଗ୍ରହଣ କରି ରହିଲେ, ଯମଦଗ୍ନି ନିଜର କାମଧେନୁ

ସାହାଯ୍ୟରେ ରାଜକୀୟ ଉପଚାର ଦ୍ୱାରା ରାଜାଙ୍କୁ ପରିଚର୍ଯ୍ୟା କରିଥିଲେ । ପରଦିନ ଏ ଗୁପ୍ତ ଖବର ପାଇ ମହାରାଜା କାର୍ତ୍ତବୀର୍ଯ୍ୟ ଯମଦଗ୍ନିଙ୍କୁ ଉକ୍ତ କାମଧେନୁଟି ମାଗିଲେ । ଯମଦଗ୍ନି କାମଧେନୁଟି ନ ଦେବାରୁ ତାଙ୍କୁ ବିନାଶ କରିଥିଲେ । ପର୍ଶୁରାମ ପିତୃହତ୍ୟାର ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ କଠୋର ତପସ୍ୟା କରି ନାରାୟଣଙ୍କ ଠାରୁ ବିଷ୍ଣୁତେଜ ପ୍ରାପ୍ତ ହୋଇ କାର୍ତ୍ତବୀର୍ଯ୍ୟଙ୍କୁ ବିନାଶ କଲେ ଏବଂ ସେହି ବିଷ୍ଣୁ ଶକ୍ତି ଦ୍ୱାରା ପୃଥିବୀ ଏକୋଇଶବାର ପ୍ରଦକ୍ଷିଣ କରି କ୍ଷତ୍ରୀୟ ମର୍ଦ୍ଦନ କରିଥିଲେ ।

— ରାମାୟଣ—

୪୭ ପଦ –

**ବାଲ୍ମୀକି ଖଣ୍ଡ ବୃତ୍ତିକି ଆଦରେ କରୁଥିଲେ ।**
**ତଦ୍ଧ୍ୟ ଜଗତେ ପ୍ରେମ ସାଧୁ ଦର୍ଶନେ ହୋଇଲେ ଯେ ॥୪୭॥**

ବାଲ୍ମୀକି ଖଣ୍ଡ ବୃତ୍ତିକି ଆଦରେ କରିଥିଲେ—

ଦସ୍ୟୁ ରତ୍ନାକର ବାଟରେ ପଥିକମାନଙ୍କୁ ମାରି କୁଟୁମ୍ବ ପୋଷୁଥିଲେ । ଦିନେ ନାରଦଙ୍କ ସହିତ ଭେଟ ହେଲା । ନାରଦଙ୍କୁ ମାରିବାକୁ ତତ୍ପର ହେଲାବେଳେ ନାରଦ କହିଲେ, 'ରତ୍ନାକର, ତୁ ମୋତେ କାହିଁକି ମାରିବୁ ?' ରତ୍ନାକର କହିଲା, 'ମୁଁ ତୁମକୁ ମାରି ତୁମ ପାଖରେ ଥିବା ଧନ ନେଇ ମୋର ପିତା, ମାତା, ପୁତ୍ର, ପତ୍ନୀ ଇତ୍ୟାଦିଙ୍କୁ ପୋଷିବି ।' ନାରଦ କହିଲେ, 'ତୁ ଯେଉଁ ପାପ କରୁଛୁ ତାର ଦଣ୍ଡ କିଏ ପାଇବ ଜାଣିଛୁ ?' ରତ୍ନାକର କହିଲା, 'କାହିଁକି, ମୋ ଅର୍ଜିତ ଧନ ଯେଉଁମାନେ ଖାଉଛନ୍ତି ସେମାନେ ସମସ୍ତେ ସେ ପାପର ଦଣ୍ଡ ଭୋଗ କରିବେ ।' ନାରଦ କହିଲେ, 'ରେ ରତ୍ନାକର, ତୁ ଅର୍ଜିଥିବା ପାପ କେହି ଭାଗ ନେବେ ନାହିଁ । ତୁ ଯାଇ ତୋର ପରିବାରବର୍ଗଙ୍କୁ ପଚାରି ବୁଝ ।' ରତ୍ନାକର ନାରଦଙ୍କ କଥାରେ ଘରକୁ ଫେରିଲା । ପ୍ରଥମେ ପିତା ମାତାଙ୍କୁ ପଚାରିଲା, 'ପିତା ! ମୁଁ ଅସଦୁପାୟରେ ଯେଉଁ ଧନ ଆଣି ତୁମକୁ ପୋଷୁଛି ସେ ପାପରୁ ତୁମେ କେତେ ଭାଗ ଗ୍ରହଣ କରିବ ?'

ପିତାମାତା ଉତ୍ତର ଦେଲେ, 'ଆମେ ତୋତେ ପୁତ୍ର ରୂପେ ଜନ୍ମ ଦେଇଛୁ । ଏ ବୃଦ୍ଧ ଅବସ୍ଥାରେ ତୁ ଆମକୁ ପୋଷିବୁ । ଆମେ ତୋ ପାପରୁ କାହିଁକି ଭାଗ ନେବୁ ?' ନିରାଶ ହୋଇ ରତ୍ନାକର ନିଜର ପତ୍ନୀ ନିକଟକୁ ଗଲା । ତାକୁ ପଚାରିବାରେ ସେ ମଧ୍ୟ ସେହିପରି ଉତ୍ତର ଦେଲା—'ମୋ ହାତ ଧରି ତୁମେ ବିବାହ କଲ । ତୁମେ ମୋ'ର ଭର୍ତ୍ତା । ମୋର ଭରଣ ପୋଷଣ ଦାୟୀତ୍ୱ ଗ୍ରହଣ କରିଛ । ତୁମ ପାପର ଭାଗ ମୁଁ କାହିଁକି ନେବି ?' ଏପରି ଶୁଣି ନିରାଶ ହୋଇ ରତ୍ନାକର ନାରଦଙ୍କ ନିକଟରେ ପହଞ୍ଚି କିପରି ମୁକ୍ତି ପାଇବ ପଚାରିଲା । ନାରଦ କହିଲେ, 'ତ ରାମନାମ ଜପକର ।' ମହାପାପୀ ରତ୍ନାକର ରାମନାମ ଉଚ୍ଚାରଣ କରି ପାରିଲେ ନାହିଁ । ତେଣୁ ନାରଦ ତାଙ୍କୁ ମରା ମରା ଜପ କରିବାକୁ କହିଲେ । ସେହିଦିନଠାରୁ ରତ୍ନାକର ମରା ମରା ଜପ କରି ଏପରି କଠୋର ତପସ୍ୟା କଲେ ଯେ ତାଙ୍କ ଉପରେ ଉଇହୁଙ୍କା ହୋଇଗଲା । ସେହି ହୁଙ୍କାରୁ ପୁନରାୟ ଜନ୍ମ ଗ୍ରହଣ କରି ସେ ରତ୍ନାକର ଦସ୍ୟୁ ହେଲେ ମହାମୁନି ବାଲ୍ମୀକି ।

—ରାମାୟଣ—

## ସପ୍ତଦଶ ଛାନ୍ଦ

**୧୩ ପଦ—**

**ବଳିଷ୍ଠ ଦାନବେ ପୂର୍ବ ଦେବ କହି**
**ଅନୁଜ ଦେବତା ଇନ୍ଦ୍ର,**
**ବୋଲାଇ ସପତ୍ନୀ ଯେ ଯାହାର ପ୍ରୀତି**
**କେହି ହୋଇ ନାହିଁ ସାନ୍ଦ୍ର ।**
**ବସା କର ନୃପତି,**
**ବୁଦ୍ଧି ଥିଲେ ବୋଧି କ୍ଷିତିପତି ।। ୧୩ ।।**

ବଳିଷ୍ଠ ଦାନବେ ପୂର୍ବ ଦେବ କହି ଅନୁଜ ଦେବତା ଇନ୍ଦ୍ର—

ଦକ୍ଷ ପ୍ରଜାପତିଙ୍କର ଷାଠିଏଟି କନ୍ୟା । ସେଥିରୁ ସତେଇଶ କନ୍ୟା ଚନ୍ଦ୍ର ଗ୍ରହଣ କଲେ । ତେର କନ୍ୟା କଶ୍ୟପଙ୍କୁ ପ୍ରଦାନ କଲେ । ସେହି ତେର କନ୍ୟାଙ୍କ ମଧ୍ୟରେ ବଡ ହେଉଛନ୍ତି ଦିତି ଓ ଦ୍ୱିତୀୟା କନ୍ୟା ଅଦିତି ।

ଦିତି କଶ୍ୟପଙ୍କ ସହିତ କାଳବେଳ ନଗଣି ସନ୍ଧ୍ୟା ସମୟରେ ପ୍ରଣୟ ରତ ହେବାରେ ତାଙ୍କ ଗର୍ଭରୁ ସନ୍ଧ୍ୟାମାଟି (ରାକ୍ଷସଗଣ) ଜନ୍ମ ହେଲେ । ମହାପରାକ୍ରମଶାଳୀ ଓ ମାୟାବୀ ଅଦିତି ନିଶାର୍ଦ୍ଧରେ କଶ୍ୟପଙ୍କ ସହ ପ୍ରଣୟ କରି ଇନ୍ଦ୍ରାଦି ଦେବତାମାନଙ୍କୁ ଜନ୍ମ ଦେଲେ । ବଡ଼ ପୁଅ ରାକ୍ଷସ ମାନେ କ୍ରୂରଧର୍ମା ଥିବାରୁ ଅଦିତି କଶ୍ୟପଙ୍କୁ ବୁଝାଇ ନିଜର ପୁତ୍ର ଇନ୍ଦ୍ରଙ୍କୁ ରାଜା କରାଇ ନେଲେ । ବଡ଼ ଭଉଣୀ ଗର୍ଭ ସମ୍ଭୂତ ରାକ୍ଷସମାନେ ବୟସରେ ବଡ଼ ହୋଇ ରାଜସିଂହାସନ ପାଇଲେ ନାହିଁ ।

—ଗରୁଡ଼ ପୁରାଣ ଓ ବାମନ ପୁରାଣ—

୧୭ ପଦ—

ବୋଲୁଁ ନରପତି ବୋଇଲା ଯୁବତୀ
ତିନିବାର ସତ୍ୟ କଲେ,
ବୃକାସୁର ତାହା କରି ନିଜ ଶିରେ
ଯଥା ଦେଲା ହରିବୋଲେ ।
ବାଧ୍ୟ କଲେ ନୃପତି
ବିଶ୍ୱମୋହିନୀ ନାରୀଙ୍କ ପ୍ରୀତି ॥ ୧୭ ॥

ବୃକାସୁର ବୃତାନ୍ତ—

ବୃକା ନାମକ ଦୈତ୍ୟ ତପସ୍ୟା କରି ଶିବଙ୍କୁ ଆରାଧନା କଲା । ଶିବ ଆବିର୍ଭାବ ହୋଇ ବର ଯାଚିଲେ । ବୃକା ଅମର ବର ମାଗିବାରେ ଶିବ ମନାକଲେ । କହିଲେ, 'ଏ ବର ମୋର କ୍ଷମତା ବାହାରେ । ତୁ ଅନ୍ୟବର ମାଗିନେ ।' ବୃକା ଚିନ୍ତା କରି କହିଲା, 'ପ୍ରଭୁ ! ଯଦି ଅନ୍ୟବର ଦେବେ, ତେବେ ଏହି ବର ଦିଅନ୍ତୁ—ଜଳ, ସ୍ଥଳ, ଅନଳ, ଅନିଳ ଓ ମାୟାଚର ଯେ କୌଣସି ପ୍ରାଣୀଜଗତ ମୁଣ୍ଡରେ ମୁଁ ହାତ ଦେବି ସେ ଭସ୍ମ ହୋଇଯିବ । ଆଉ କୌଣସି ବସ୍ତୁ ମୋ ଦୃଷ୍ଟିରେ ଅଦୃଶ୍ୟମାନ ରହିବ ନାହିଁ । ଶିବ ତଥାସ୍ତୁ କହିବାରେ ବୃକା ଆନନ୍ଦରେ ଫେରିଲା ।

ଶିବଙ୍କ ବର ପରୀକ୍ଷା କରିବାକୁ ବରପ୍ରାପ୍ତ ବୃକା ବାଟରେ ଯାହାକୁ ଦେଖିଲା ତା ମୁଣ୍ଡରେ ହାତ ଥୋଇ ପାଉଁଶ କଲା । ସେହିଦିନଠାରୁ ତା'ର ନାମ ହେଲା ଭସ୍ମାସୁର । ବେଳକୁବେଳ ତା'ର କୌତୂହଳ ବଢିଲା । ସେ

ଯିବା ପଥରେ ମୁନି, ବ୍ୟାଘ୍ର, ସିଂହ, କୀଟ, ପତଙ୍ଗ ସମସ୍ତଙ୍କୁ ଭସ୍ମ କରିବାରେ ଲାଗିଲା । ଦେବରାଜ ଇନ୍ଦ୍ର ଏ ଦୃଶ୍ୟ ଦେଖି ବିଶେଷ ଚିନ୍ତିତ ହୋଇ ପଡ଼ିଲେ । ଏତିକିବେଳେ ନାରଦ ଆସି ଇନ୍ଦ୍ରଙ୍କ ନିକଟରେ ପହଞ୍ଚିଲେ । ଦେଖିଲେ ଇନ୍ଦ୍ର ମୁହଁ ଶୁଖାଇ ବସିଛନ୍ତି । ନାରଦ କହିଲେ, 'ଦେବରାଜ ଇନ୍ଦ୍ର, ଆପଣଙ୍କର ଏ ବିଷଣ୍ଣ ବଦନ କାହିଁକି ?' ଇନ୍ଦ୍ର କହିଲେ, 'ହେ ଦେବର୍ଷି ! ଏଇ ଦେଖନ୍ତୁ ଦୁଷ୍ଟ ରାକ୍ଷସ ଶିବଙ୍କ ଠାରୁ ବର ପାଇ କିପରି ଅନ୍ୟାୟ କରୁଛି । ଏପରି ଯଦି ଭସ୍ମ କରିବ ସୃଷ୍ଟି ରହିବ ତ ?' ନାରଦ କହିଲେ, 'ଏକଥା ପାଇଁ ତୁମେ ଚିନ୍ତା କରନା । ମୁଁ ଯାଉଛି ସେ ରାକ୍ଷସକୁ ବୁଝାଇ ସାନ୍ତ୍ୱନା ଦେବି । ସେ ଏପରି କାହାକୁ ବିନାକାରଣରେ ଭସ୍ମ କରିବ ନାହିଁ ।' ଏହା କହି ନାରଦ ମନ ଯାନରେ ଚଢି ଭସ୍ମାସୁର ନିକଟକୁ ଗଲେ । ଦୂରରୁ ନାରଦଙ୍କୁ ଦେଖି ଭସ୍ମାସୁର ଭାବିଲା, 'ଏ ପର୍ଯ୍ୟନ୍ତ ଯେତେ ତପସ୍ୱୀଙ୍କୁ ଭସ୍ମ କରି ଆସିଲି ଏପରି ତେଜସ୍ୱୀ ଓ ସୁସ୍ଥ ଧବଳ ମୁନି କେହି ନୁହନ୍ତି । ଏ ଋଷି ବଡ ସ୍ୱାସ୍ଥ୍ୟବାନ । ଏହାଙ୍କୁ ଭସ୍ମ କରିବା ।' ଏହି କଥା ଚିନ୍ତା କରି ଭସ୍ମାସୁର ନାରଦଙ୍କୁ ଭସ୍ମ କରିବାକୁ ଉଦ୍ୟତ ହେଲା । ନାରଦ ବିପଦର ସମ୍ମୁଖୀନ ହୋଇ କହିଲେ, 'ଭସ୍ମା ! ତୁ କାହିଁକି ହାତ ଟେକୁଛୁ ?' ଭସ୍ମା କହିଲା 'ମୁଁ ଶିବ ବର ଦ୍ୱାରା ଯାହାକୁ ଇଚ୍ଛା ତାକୁ ଭସ୍ମ କରିପାରେ । ଦେଖୁଛ ମୋ ପଛରେ କେତେ ଜୀବଜଗତ ଭସ୍ମ ହୋଇ ଜୁଢ ହୋଇଛନ୍ତି । ତୁମକୁ ମଧ୍ୟ ସେହିପରି ଭସ୍ମ କରିବି ।' ନାରଦ ରାକ୍ଷସ କବଳରୁ ଉଦ୍ଧାର ପାଇବା ପାଇଁ ଚିନ୍ତା କରି କହିଲେ, 'ହେ ରାକ୍ଷସରାଜ ! ମୁଁ ଦେବର୍ଷି ନାରଦ ତୋର ହିତ କାମନା କରି ଆସିଛି । ଯେଉଁ ଶିବ ତୋତେ ବର ଦେଲେ ସେ କପଟ ରଖି ତେତେ ବର ଦେଇଛନ୍ତି । ତୋ ହସ୍ତରେ ସମସ୍ତେ ଭସ୍ମ ହେବେ କିନ୍ତୁ ଦେବତାମାନେ ଭସ୍ମ ହେବେ ନାହିଁ ।' ଭସ୍ମାସୁର କହିଲା 'ନା, ଶିବ ମୋତେ ଠିକ୍ ବର ଦେଇଛନ୍ତି । ଦେବତା, ମାନବ, ଯକ୍ଷ, ରାକ୍ଷସ, କୀଟ, ପତଙ୍ଗ କେହି ମୋ କବଳରୁ ରକ୍ଷା ପାଇବେ ନାହିଁ । ତୁମେ ତ ଦେବର୍ଷି, ତୁମେ କିପରି ମୋତେ ଠକିବାକୁ ଯାଉଛ । ତୁମେ ଯଦି ଭସ୍ମ ନ ହୁଅ ତେବେ ମୁଁ ଜାଣିବି ଶିବ

ମୋତେ ଠକିଛନ୍ତି ।' ନାରଦ ବଡ଼ ଅଡୁଆରେ ପଡ଼ିଲେ । କହିଲେ, 'ହେ ଦୈତ୍ୟରାଜ ! ମୁଁ ତୁମର ହିତ ପାଇଁ ଆସିଛି । ମୁଁ ସ୍ୱର୍ଗପୁରରେ ଦେବର୍ଷି ଓ ମର୍ତ୍ତ୍ୟରେ ନାରଦ । ତୁମେ ମୋ ମୁଣ୍ଡରେ ହାତ ଦେଲେ ମୁଁ ନିଶ୍ଚୟ ଜଳି ପାଉଁଶ ହେବି. ଏଥିରେ ସନ୍ଦେହ ନାହିଁ । କିନ୍ତୁ ଯଦି ମୋ କଥା ବିଶ୍ୱାସ କର ତେବେ ମୋ କଥା ମାନି କୌଣସି ଦେବତାଙ୍କଠାରେ ତୋ ବର ପରୀକ୍ଷା କର ।' ଭସ୍ମା ପଚାରିଲା, ବର୍ତ୍ତମାନେ ମୁଁ ଦେବତା କେଉଁଠୁ ପାଇବି । ତୁମେ ମୋ କବଳରୁ ଖସି ପଳାଇ ଯିବାକୁ ଭାବିଛ ।' ନାରଦ କହିଲେ, 'ହେ ଦୈତ୍ୟରାଜ ! ମୁଁ ସତ୍ୟ କରୁଛି ତୁମେ ପରୀକ୍ଷା କରି ଫେରିବା ପର୍ଯ୍ୟନ୍ତ ମୁଁ ଏହିଠାରେ ବସିଥିବି । ଯଦି ମୋ କଥା ମିଛ ହୁଏ ତା ହେଲେ ଯେଉଁ ଦଣ୍ଡ ଦେବ ମୁଁ ଭୋଗିବାକୁ ପ୍ରସ୍ତୁତ ଅଛି ।' ଭସ୍ମାସୁର କହିଲା,'ହେ ନାରଦ,ତୁମ କଥା ଯଦି ସତ୍ୟ ହୁଏ ତୁମେ ମୋର ଗୁରୁ ହେବ । ତେବେ ଦେବତା କିଏ ।' ନାରଦ କହିଲେ, 'ଯେଉଁ ଶିବ ତୋତେ ବର ଦେଇ ଠକିଛନ୍ତି ସେ ହେଉଛନ୍ତି ଦେବ ଦେବ ମହାଦେବ । ତୁ ପ୍ରଥମେ ତାଙ୍କଠାରୁ ପରୀକ୍ଷା କରି ଦେଖ ।' ଭସ୍ମାସୁର ନାରଦଙ୍କ କଥାରେ ବିଶ୍ୱାସ କରି ପୁନରାୟ କୈଳାସକୁ ଯାତ୍ରାକଲା । ଶିବ-ଗଣ ଭସ୍ମାସୁରକୁ ଦେଖି ଭୟରେ ଯାଇ ଶିବଙ୍କୁ ଜଣାଇଲେ । ଶିବ ଭସ୍ମାସୁର ନିକଟକୁ ଆସି ପଚାରିଲେ, 'କିରେ ଭସ୍ମା, ପୁନର୍ବାର କାହିଁକି ଆସିଲୁ ?' ଭସ୍ମା ଉତ୍ତର ଦେଲା, ତୁମେ ଏତେ ଠକ ! ମୋତେ ବର ଦେଇ ଠକିଛ । ମୋ ଦ୍ୱାରା ଦେବତାମାନେ ଭସ୍ମ ହେବେ ନାହିଁ ।' ଶିବ କହିଲେ, ଏକଥା ମିଛ । ତୁ ଯାହା ମୁଣ୍ଡରେ ହାତ ଦେବୁ ସେ ଦେବତା ହେଉ, ମାନବ ହେଉ ଯେ କୌଣସି ଜୀବ ହେଉ ନିଶ୍ଚୟ ଭସ୍ମ ହେବ ।' ଭସ୍ମାସୁର କହିଲା 'ତେବେ ମୁଁ ପରୀକ୍ଷା କରିବି ।' ଶିବ କହିଲେ, 'ଯାଅ ତୋର ଯେଉଁଠି ଇଚ୍ଛା ପରୀକ୍ଷା କର ।' ଭସ୍ମାସୁର କହିଲା, ଆପଣ ତ ଦେବ ଦେବ ମହାଦେବ' ଆପଣଙ୍କଠାରେ ପ୍ରଥମେ ପରୀକ୍ଷା କରିବି ।' ଏତିକି କହି ଭସ୍ମାସୁର ଶିବଙ୍କ ମୁଣ୍ଡକୁ ହାତ ବଢ଼ାଇଲା । ଶିବ ନିରୁପାୟ ହୋଇ କୈଳାସ ଛାଡ଼ି ପଳାଇଲେ । ଭସ୍ମାସୁର ଗୋଡ଼ାଉଛି । ଶେଷରେ ଶିବ ନାରାୟଣଙ୍କୁ ଚିନ୍ତା କଲେ । ଭଗବାନ ଶିବଙ୍କ ବ୍ୟାକୁଳ ଭାବ ଜାଣି

ମୋହିନୀ ରୂପ ଧରି ସେ ବଣ ଭିତରେ ଭସ୍ମାସୁର ଆଗରେ ବିଦ୍ୟମାନ ହେଲେ । ଭସ୍ମା ମୋହିନୀକୁ ଦେଖି ଭାବିଲା ଆଜି ନ ହେଲେ କାଲି ଶିବଙ୍କୁ ଭସ୍ମ କରିବି । କିନ୍ତୁ ଏପରି ସୁନ୍ଦରୀ ସ୍ତ୍ରୀ ମୋ ଜୀବନରେ ମିଳିବା ଅସମ୍ଭବ । ଯାଉଛି ପ୍ରଥମେ ଏ ନାରୀକୁ ବୁଝାଇ ମୋର ପାଟରାଣୀ କରିବି ।

ଏହିପରି ଚିନ୍ତା କରି ଦୈତ୍ୟ ମୋହିନୀଙ୍କ ନିକଟକୁ ଯାଇ କହିଲା, 'ବରାଙ୍ଗନେ ! ଏଇ ଦେଖ ମୋର ବଳବୀର୍ଯ୍ୟ ସହିତ ମହା-ଶକ୍ତିଶାଳୀ ଶିବ ସମାନ ନହୋଇ ପ୍ରାଣ ବିକଳରେ ପଳାଉଛନ୍ତି । ମୁଁ ତୁମକୁ ପାଟରାଣୀ କରି ରଖିବି । ତୁମେ ମୋତେ ସ୍ୱାମୀରୂପେ ବରଣ କର ।' ମୋହିନୀ କହିଲେ, 'ହେ ଦୈତ୍ୟରାଜ, ମୁଁ ତୁମକୁ ପତିରୂପେ ପାଇବାକୁ ଇଚ୍ଛୁକ । କିନ୍ତୁ ମୋର ପୂର୍ବରୁ ଗୋଟିଏ ସଂକଳ୍ପ ଅଛି । ତାହା ଯିଏ ପୂର୍ଣ୍ଣ କରିବ ମୁଁ ତାର ପତ୍ନୀ ହେବି ।' ଭସ୍ମାସୁର ପଚାରିଲା, 'ତୁମର ସଙ୍କଳ୍ପଟି କ'ଣ ?' ମୋହିନୀ ଉତ୍ତର ଦେଲେ, ମୁଁ, ହେଉଛି ନୃତ୍ୟ ବିଶାରଦା । ନୃତ୍ୟରେ ଯେଉଁ ପୁରୁଷ ବର୍ଜିଯିବ ମୁଁ ତାର ସହଧର୍ମିଣୀ ହେବି ।' ରାକ୍ଷସ କହିଲେ, 'ତେବେ ବିଳମ୍ବ କାହିଁକି ? ତୁମେ ନୃତ୍ୟ ଆରମ୍ଭ କର । ମୁଁ ତୁମ ସହିତ ନୃତ୍ୟରେ ପ୍ରତିଯୋଗିତା କରିବି ।' ମୋହିନୀ ନୃତ୍ୟ ଆରମ୍ଭ କଲେ । ଭସ୍ମାସୁର ମୋହିନୀଙ୍କୁ ଅନୁକରଣ କରି ନୃତ୍ୟ କଲା । ଭାଗବତରେ ପ୍ରମାଣ ଅଛି—

ବିଷ୍ଣୁ ମୋହିନୀ ନାରୀମାୟା,
ଘେନେ ଯେଯନେ ଶଦୃଂଛାୟା ।

ମୋହିନୀଙ୍କ ସହିତ ନୃତ୍ୟରଙ୍ଗରେ ମାତି ରାକ୍ଷସ ତାର ହିତାହିତ ଜ୍ଞାନ ଭୁଲିଗଲା । କେବଳ ଏକ ଧ୍ୟାନ କିପରି ନୃତ୍ୟରେ ଜୟଲାଭ କରି ଏ ସୁନ୍ଦରୀର ପାଣିଗ୍ରହଣ କରିବ । ଭଗବାନ ଭସ୍ମାସୁରର ବିହ୍ୱଳ ମାନସ ଜାଣି ନିଜ ହାତ ନିଜ ଶିର ଉପରେ ରଖି ନୃତ୍ୟ ଆରମ୍ଭ କଲେ । ଭସ୍ମାସୁର ବର କଥା ବିବେଚନା ନକରି ମୋହିନୀଙ୍କୁ ଅନୁକରଣ କରି ନିଜ ହାତ

ନିଜ ଶିରରେ ରଖି ନୃତ୍ୟ ଆରମ୍ଭ କରିବାକୁ ଗଲା । ଯେମିତି ନିଜ ହାତ ନିଜ ଶିର ଉପରେ ରଖିଛି ସେ ଭସ୍ମ ହୋଇଗଲା ।

—ଭାଗବତ

୧୮ ପଦ—

**ବାହିଲି ରଥ ସ୍ତିରୀ ହୋଇ**
**ଶମ୍ବର ସମରେ ନାହିଁକି ମନ,**
**ବହିଲି ସତ୍ୟ ପୂର୍ତ୍ତି ହୋଇ**
**ଛୋଟିଲୁ ତୋ ସୁତ ହେବ ରାଜନ ।**
**ବାଲି ବାଲୁକା ଖେଳ,**
**ବାଧିରେ ଛ ଆନ ତୁମ୍ଭ ବୋଲ ॥ ୧୮ ॥**

ବାହିଲି ରଥ ସ୍ତୀରୀ ହୋଇ—

ଦଶରଥ ଇନ୍ଦ୍ରଙ୍କର ପକ୍ଷ ହୋଇ ଶମ୍ବରାସୁର ସହିତ ଯୁଦ୍ଧ କଲେ । ଶମ୍ବରାସୁର ଦଶରଥଙ୍କ ସହ ଯୁଦ୍ଧ କରିବା ପାଇଁ ସକ୍ଷମ ନହୋଇ ମାୟାଯୁଦ୍ଧ ଆରମ୍ଭ କଲା । ଦଶରଥଙ୍କ ସାରଥିକୁ ସମୁଦ୍ର ତଟ ପର୍ଯ୍ୟନ୍ତ ନେଇ ମାରିଦେଲା ଏବଂ ରଥଚକରୁ ଅନିକିଳି ଖସାଇ ଦେଲା । ସେତେବେଳେ କୈକେୟୀ ସହଚରୀ ମାନଙ୍କ ସଙ୍ଗରେ ସମୁଦ୍ର ତଟରେ ଖେଳୁଥିଲେ । ଦଶରଥଙ୍କର ଏ ଦୁର୍ଦ୍ଦଶା ଦେଖି ଦଉଡ଼ି ଆସି ନିଜେ ସାରଥି ହୋଇ ରଥ ଚାଳନ କଲେ ଏବଂ ଅନିକିଳି ଖୋଜିବାକୁ ଅବସର ନପାଇ ନିଜର ଅଙ୍ଗୁଳି ସାହାଯ୍ୟରେ ରଥଟିକୁ ରଖିଦେଲେ । ସେ ଯୁଦ୍ଧରେ ଶମ୍ବରାସୁର ପରାଜୟ ହେଲା । ଦଶରଥ ବିଜୟ ଲାଭ କଲେ । କୈକେୟୀଙ୍କୁ ବିବାହ କଲେ ଏବଂ ଦୁଇଟି ବର ଯାଚିଥିଲେ । କୈକେୟୀ ସେ ବର ଦୁଇଟି ଯଥା ସମୟରେ ମାଗି ନେବେ ବୋଲି କହି ଦଶରଥଙ୍କୁ ସତ୍ୟ କରାଇଥିଲେ । ଦଶରଥ କୈକେୟୀଙ୍କ ନିକଟରେ ସେହି ଦୁଇଟି ବରର ଋଣୀଥିଲେ ।

—ରାମାୟଣ

୧୯ ପଦ—

ବସୁଧାଧିପତି ପଦ ରାମେ
ଉଚିତ ନୁହେଁ ସେ ଜାମାତା ତାର ।
ବନେ ହରୁ ଦିନ,
ଚଉଦ ବରଷ ପୁତ୍ର ରାଜା ହେଉ ମୋର ।
ଭାମା ବଚନ ଶୁଣି,
ଶନ୍ତାନ ପ୍ରେ ଗ୍ଲାଟନ କହେ ବାଣୀ ।। ୧୯ ।।

ରାମ ଚଉଦ ବର୍ଷ ବଣକୁ ଯିବେ—କୈକେୟୀ ଏ ବର କାହିଁକି ମାଗିଲେ, ଚିର ଜୀବନ ପାଇଁ ମାଗିଲେ ନାହିଁ କାହିଁକି ?

ରାମ ରାଜାହେବା ବାର୍ତ୍ତା ଶୁଣି ଅଯୋଧ୍ୟା ଏବଂ ରାଣୀହଂସ ପୁରରେ ଆନନ୍ଦର ଜୁଆର ଛୁଟିଛି । କିନ୍ତୁ ରାମ ଗୋଟିଏ ଏକାନ୍ତ ସ୍ଥାନରେ ବସି ଚିନ୍ତାମଗ୍ନ । ରାମ ଚିନ୍ତିତ, ବିଷର୍ଣ୍ଣ ଖବର ରାଣୀହଂସପୁରରେ ପହଞ୍ଚିଲା । ସମସ୍ତେ ଆସି ରାମଙ୍କୁ ଦୁଃଖର କାରଣ ପଚାରିଲେ । କିନ୍ତୁ ବଶିଷ୍ଠ ଜାବାଳି, ବାମଦେବ, ସୁମନ୍ତ୍ର, ଦଶରଥ, କୌଶଲ୍ୟା, ସୁମିତ୍ରା ଲକ୍ଷ୍ମଣ ଇତ୍ୟାଦି କାହାକୁ ରାମ ଉତ୍ତର ନଦେଇ ନୀରବ । ଶେଷରେ କୈକେୟୀ ଆସି ପଚାରିଲେ, 'ରାମ ! ରାତି ପାହିଲେ ତୁ ରଜା ହେବୁ । ଆଜି କାହିଁକି ତୋର ଏପରି ଦୁଃଖ ?' ରାମ ଉତ୍ତର ଦେଲେ, 'ମା', ଏ ସମସ୍ତେ ଅନ୍ତର ହୁଅନ୍ତୁ ମୁଁ ଏକାନ୍ତରେ ତୁମକୁ ମୋର ମନକଥା କହିବି ।' ସମସ୍ତେ ଚାଲିଗଲେ । କେବଳ ରାମ ଓ କୈକେୟୀ ବସି ରହିଲେ । ରାମ କହିଲେ, 'ମା, ମୁଁ ଯୋଗ୍ୟ ସନ୍ତାନ ବୋଲି ଜାଣି ବାପା ମୋତେ ରାଜଗାଦି ଦେଉଛନ୍ତି । ମୁଁ ଯଦି ପିତୃଋଣ ଶୁଝି ପାରିବି ନାହିଁ ମୋତେ କିପରି ଯୋଗ୍ୟ ସନ୍ତାନ କୁହାଯିବ ? ଆଉ ଗୋଟିଏ କଥା । କାଲି ମୁଁ ସିଂହାସନରେ ବସିଲେ ସମସ୍ତେ ମୋତେ ଉପଢ଼ୌକନ ଦେବେ । ତୁମେ ମୋତେ କ'ଣ ଦେବ ?' କୈକେୟୀ କହିଲେ, 'ବାପା, ତୋତେ ଅଦେୟ ମୋର କିଛି ନାହିଁ । ତୁ ଯାହା ମାଗିବୁ ମୁଁ

ତୋତେ ତାହା ଦେବି ।' ରାମ କହିଲେ, 'ତେବେ ତୁମେ ସତ୍ୟକର ।' କୈକେୟୀ ସତ୍ୟ କଲେ । ରାମ କହିଲେ, 'ମା, ପୂର୍ବରୁ ବାପା ତୁମ ନିକଟରେ ଦୁଇଟି ବର ରଖି ଅଛନ୍ତି । ମୋତେ ବର୍ତ୍ତମାନ ତୁମେ ଉପଢୌକନସ୍ୱରୂପ ସେହି ବର ଦୁଇଟି ଦେବ । ମୋ ନିମନ୍ତେ ତୁମେ ବାପାଙ୍କୁ ସେ ବରଦୁଇଟି ମାଗିବ ।' କୈକେୟୀ ପଚାରିଲେ, 'କହ ବାପା' ତୋ ପାଇଁ ରାଜାଙ୍କ ଠାରୁ ମୁଁ କ'ଣ ମାଗିବି ?'

ରାମ କହିଲେ, 'ମା ପ୍ରଥମ ବର ମାଗିବ ଭରତ ରାଜା ହେବ । ଦ୍ୱିତୀୟ ବରରେ ମୋତେ ଚଉଦ ବର୍ଷ ବଣକୁ ପଠାଇବ ।' କୈକେୟୀ ଏକଥା ଶୁଣି ଅଚେତନ ହୋଇ ପଡିଲେ । କିଛି ସମୟ ପରେ ସଂଜ୍ଞା ଫେରି ପାଇ କହିଲେ, 'ରାମ, ତୋ କଥା ମାନି ମୁଁ ବର ମାଗିବି । ଭରତ ରାଜା ହେଉ; କିନ୍ତୁ ତୁ ବଣକୁ ନ ଯା ।' ରାମ କହିଲେ, ମା, ତମେ ଜାଣିଛ ଦୁଷ୍ଟ ରାବଣକୁ ବିନାଶ କରିବାକୁ ମୋର ଜନ୍ମ । ମୁଁ ଯଦି ବଣକୁ ନଯାଏ ତେବେ ରାବଣ ମରିବ କିପରି ?'

କୈକେୟୀ କହିଲେ 'ବାପା,ତୁ ଇଚ୍ଛାକଲେ ଏହିଠାରେ ରହି ରାବଣ ପରି କେତିଏ ରାବଣ ମାରି ପାରିବୁ । ବଣକୁ ଚଉଦ ବର୍ଷ ଯିବା କ'ଣ ଦରକାର ?' ରାମ ଉତ୍ତର ଦେଲେ, 'ମା, ତୁମ କଥା ସତ; ମୁଁ ରାବଣକୁ ମାରିବା କିଛି ଆଶ୍ଚର୍ଯ୍ୟ ନୁହେଁ । କିନ୍ତୁ ରାବଣର ପୁଅ ଇନ୍ଦ୍ରଜିତ ବର ପାଇଛି– ବାର ବର୍ଷ ଆହାର, ନିଦ୍ରା, ମୈଥୁନ ଯେଉଁ ବୀର ତ୍ୟାଗ କରିଥିବ ତା ହସ୍ତରେ ହେବ ତାର ମୃତ୍ୟୁ । ମୁଁ ଚଉଦ ବର୍ଷ ବଣକୁ ଗଲେ ମୋ ସହିତ ଲକ୍ଷ୍ମଣ ଯିବ । ସେ ବାରବର୍ଷ ଆହାର, ନିଦ୍ରା, ମୈଥୁନ ବର୍ଜନ କରିବ । ତାପରେ ସୀତା ଚୋରୀ ହେବ । ମୁଁ ସୈନ୍ୟ ବଳ ନେଇ ରାବଣ ସହିତ ଯୁଦ୍ଧ କରିବି । ଲକ୍ଷ୍ମଣ ଦ୍ୱାରା ଇନ୍ଦ୍ରଜିତ ମରିବ । ତାପରେ ରାବଣ ମରିବ । ଏଣୁ ଏକଥା ଗୋପନ ରଖି ମୋ ନିମନ୍ତେ ପିତାଙ୍କ ଠାରୁ ଆଜି ରାତିରେ ତୁମେ ଏହି ଦୁଇ ବର ମାଗିବ । ସେଥିରେ ପିତା ହେବେ ଋଣ ମୁକ୍ତ । ମୋର ଜନ୍ମ ହେବ ସାର୍ଥକ ।'

—କୃତିବାସ ରାମାୟଣ—

୨୦ ପଦ—

ବଶ୍ରେବନ ନାରୀ ଛନ୍ଦେ ନ୍ଦ୍ୟାନ୍ତ ହଣ

ତା ଜୀବ ଯେମନ୍ତେ ହର !

ବଧ ସଧ କର ମୋର ପ୍ରେସ୍ୱ ରୂପ

ତୁଚ୍ଛ ଥିଲୁ ଅନ୍ତର ।

ବୋଲି ଏତେ ମଉନ,

ବଲ୍ଲେଜକେ ହରିଲେ ଚେଦନ ॥ ୨୦ ॥

ପ୍ରହ୍ଲାଦଙ୍କ ପୁତ୍ର ବୈଲ୍ଲେଚନ କଠୋର ତପସ୍ୟା କରି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରି ବର ମାଗିଲା । ଦିନରେ ମରିବ ନାହିଁ, ରାତିରେ ମରିବ ନାହିଁ' କୌଣସି ଅସ୍ତ୍ର ଶସ୍ତ୍ରରେ ମରିବ ନାହିଁ' ଘରେ ମରିବ ନାହିଁ, ବାହାରେ ମରିବ ନାହିଁ' ଜୀବ ଜଗତରେ କାହା ଦ୍ୱାରା ମରିବ ନାହିଁ' ଜଳ, ସ୍ଥଳ, ଅନିଳ, ଅନଳ, ସ୍ତ୍ରୀ, ପୁରୁଷ, ଭୂତ, ପ୍ରେତ, ନାଗ, ନର, ଦେବ, ରାକ୍ଷସ, ତଳ, ଉପର କୌଣସି ଥିରେ ମରିବ ନାହିଁ । ବ୍ରହ୍ମା ସମସ୍ତ ବର ପ୍ରଦାନ କରି ଶେଷରେ କହିଲେ—

ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହେଲେ ବି ମରଇ ।

ତୋର ମୃତ୍ୟୁ କେଉଁଥିରେ ହେବ ସେ କଥା ମଧ୍ୟ ମାଗିନେ ।' ବୈଲେଚନ କହିଲା, ହେ ବ୍ରହ୍ମନ୍ ! ମୋ ମସ୍ତକରେ ଗୋଟିଏ ସୁବର୍ଣ୍ଣ କେଶ ରହିବ । ସେ କେଶକୁ ଉପଯୁକ୍ତ ବର ବ୍ୟତୀତ ଯଦି କେହି ଉପାଡ଼ି ଦିଏ ତେବେ ମୋର ମୃତ୍ୟୁ ହେବ ।' ବ୍ରହ୍ମା ତଥାସ୍ତୁ କହି ଚାଲିଗଲେ । ରାକ୍ଷସ ମହାପ୍ରତାପୀ ହୋଇ ଦେବତାମାନଙ୍କୁ କଷ୍ଟ ଦେଲା । ଦେବତାମାନେ ନାରାୟଣଙ୍କୁ ପ୍ରାର୍ଥନା କଲେ । ଭଗବାନ ଦେବତାମାନଙ୍କ ବିକଳ ସହି ନପାରି ମାଳତୀ କନ୍ୟା ରୂପରେ ବଣ ଭିତରେ ବୁଲିବାକୁ ଲାଗିଲେ । ବୈଲ୍ଲେଚନ ଦୈବାତ୍ ସେଦିନ ମୃଗୟାକୁ ଆସି ମାଳତୀ ରୂପରେ ମୁଗ୍ଧ ହୋଇ ପ୍ରେମ ଭିକ୍ଷା କଲା । ମାଳତୀରୂପୀ ଠାକୁର କହିଲେ, 'ହେ ଦୈତ୍ୟରାଜ, ମୁଁ ଅବିବାହିତା କନ୍ୟା, ତୁମର ପାଣିଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ଅଛି । କିନ୍ତୁ ମୋର ଗୋଟିଏ ବ୍ରତ ଅଛି । ଏକବର୍ଷ

ପର୍ଯ୍ୟନ୍ତ ତୁମର ନଗର ସୀମାନ୍ତ ପୁଷ୍ପବାଟିକାରେ ମୋତେ ରଖିବ । କୌଣସି ପୁରୁଷ ସେ କ୍ଷେତ୍ରକୁ ଆସିବେ ନାହିଁ । ତୁମେ ଦୈନନ୍ଦିନ ସନ୍ଧ୍ୟାରେ ଆସି ମୋର ଭଲ ମନ୍ଦ ବୁଝି ଯାଉଥିବ । ଏକ ବର୍ଷ ପରେ ମୁଁ ତୁମକୁ ବିବାହ କରିବି ।' ବୈଲୋଚନ ମାଳତୀର କଥାରେ ରାଜି ହୋଇ ନିଜ ରାଜ୍ୟର ପୁଷ୍ପ ବାଟିକା ମଧ୍ୟରେ ନୂତନ ଗୃହ ନିର୍ମାଣ କରି ତାକୁ ରଖାଇ ଦେଲା । ପ୍ରତିଦିନ ସେଠାକୁ ଯାଇ ମାଳତୀଙ୍କ ସହ ଦେଖା କରୁଥାଏ । ମାଳତୀ ଏପରି ସ୍ନେହ କଲେ ଯେ ବୈଲୋଚନ ମାଳତୀଙ୍କୁ ନ ଦେଖିଲେ ଜଳ ସ୍ପର୍ଶ କରୁ ନାହିଁ । ଦିନେ କଥା ପ୍ରସଙ୍ଗରେ ମାଳତୀ କହିଲେ, 'ହେ ରାଜନ୍ ! ଗୋଟିଏ କଥାରେ ମୋତେ ଦୁଃଖ ଲାଗୁଛି । ତୁମେ ମର ଜଗତ ଲୋକ । ମୁଁ ଅମର ଜଗତ ସ୍ତ୍ରୀ । ତୁମର ମୃତ୍ୟୁ ହେଲେ ମୋତେ ବିଧବା ଦଶା ଭୋଗିବାକୁ ପଡ଼ିବ ।' ମାଳତୀଙ୍କ ପ୍ରତି ଅନୁରାଗ ଏତେ ପ୍ରବଳ ଥିଲା ଯେ ବୈଲୋଚନ ତାର ମୃତ୍ୟୁଭେଦ ମାଳତୀଙ୍କୁ କହିଦେଲା । ଏହିପରି କିଛିଦିନ ବିତିଗଲା । ଦିନେ ମାଳତୀ ସନ୍ଧ୍ୟାରେ ଘରର ଦେହଳି ନିକଟରେ ବୈଲୋଚନ ସଙ୍ଗରେ ବସି ପ୍ରେମାଳାପ କରୁଛନ୍ତି । କଥା ପ୍ରସଙ୍ଗରେ ବୈଲୋଚନକୁ ନିଜର ଜାନୁ ଉପରକୁ ଟାଣି ଆଣି ବସାଇଦେଲେ ଏବଂ ରାକ୍ଷସର କେଶକୁ ସ୍ନେହରେ ସାଉଁଳିବାକୁ ଲାଗିଲେ । କେଶ ସାଉଁଳି ସାଉଁଳି ସୁବର୍ଣ୍ଣ କେଶଟିକୁ ନିଜ ଅଙ୍ଗୁଳିରେ ଗୁଡ଼ାଇ ନେଲେ । ଠିକ୍ ସନ୍ଧ୍ୟା ସମୟରେ ନିଜ ରୂପ ପରିବର୍ତ୍ତନ କରି ନପୁଂସକ ବେଶରେ କେଶଟିକୁ ଉପାଡ଼ିଦେଲେ । ରାକ୍ଷସ ତତ୍‌କ୍ଷଣାତ୍ ପ୍ରାଣଛାଡ଼ି ଚିତ୍କାର କରି ମରିଗଲା ।

—ନରକେଶରୀ ପୁରାଣ

୨୧ ପଦ—

ବେଳାକୁ ନଲଙ୍ଘେ ସତ୍ତେ୍ୱ ପାରାବାର

ଯଥା ତାକୁ ନ ଲଙ୍ଘିଲା ।

ବିଷ ଭକ୍ଷଣେ ବିରୂପାକ୍ଷ ପରାଯ୍ୟେ

ମୁକେ ସମ୍ମତ ଦର୍ଶିଲା ।

ବଡ଼ ସନ୍ତୋଷେ ରାଣୀ,

ବାଞ୍ଛା ଶ୍ରୀରାମ ଉଙ୍କାଇ ଆଣି ॥ ୨୧ ॥

ବିଷ ଭକ୍ଷଣରେ ଶିବ ବିରୋଧ କରିନଥିଲେ—

ଯେତେବେଳେ, ଦେବାସୁର ମିଶି ସମୁଦ୍ର ମନ୍ଥନ କଲେ ସମସ୍ତ ଜିନିଷ ପାଇବାପରେ ଅତିଲୋଭ କରି ବାରମ୍ବାର ମନ୍ଥନ କରିବାରୁ ହଳାହଳ ବିଷ ବାହାରିଲା । ସେ ବିଷ ଜ୍ୱାଳା ଦେବ ଦାନବ କେହି ସହିପାରିଲେ ନାହିଁ । ପୃଥିବୀ ବ୍ୟାକୁଳ ହେଲା । ନାରାୟଣ ଶିବଙ୍କୁ ପ୍ରାର୍ଥନା କରି କହିଲେ, 'ହେ ଦିଗମ୍ବର, ଆପଣ ମୁଖ ବିସ୍ତାରି ଏ କାଳକୂଟ ବିଷକୁ ଗର୍ଭସ୍ଥ କରନ୍ତୁ । ନଚେତ୍ ସୃଷ୍ଟି ଧ୍ୱଂସ ହୋଇଯିବ ।' ଶିବ ମୌନ ରହିବାରେ ସେ ବିଷ ନାରାୟଣ ଶିବଙ୍କ ଗର୍ଭରେ ଭରିଦେଲେ ।

—ମତ୍ସ୍ୟପୁରାଣ—

୨୭ ପଦ—

ବିବୁଧେ ଧୀରେ ରାଜା ଗିରେ
କହିଲେ ଏକଥା ପ୍ରମାଣ ହେବ ।
ବାହୁକ ବ୍ରତ ଫଳଦ ଧର୍ମଦତ୍ତ
ଦେବ ଦରଶନେ ଥିବ ।
ବଇକୁଣ୍ଠ ଧାମ
କସ୍ତରେ ଦେବୀ ହେଲା କ୍ଷମ ॥ ୨୭ ॥

କୈକେୟୀ ଶ୍ରୀରାମଙ୍କୁ ବଶୀଭୂତ କରି ପାରିଲେ—

ଦେବବ୍ରତ ନାମକ ବ୍ରାହ୍ମଣ କାର୍ତ୍ତିକ ବ୍ରତ କରି ଏତେ ପୁଣ୍ୟ ଅର୍ଜନ କଲେ ଯେ ସମସ୍ତ ଦେବତା ତାଙ୍କୁ ସ୍ୱଦେହରେ ବୈକୁଣ୍ଠକୁ (ସ୍ୱର୍ଗଭୁବନକୁ) ଆଣିବା ପାଇଁ ସିଦ୍ଧାନ୍ତ କଲେ । ଏପରି ସ୍ଥିର କରି ନାରଦଙ୍କୁ ଦେବବ୍ରତଙ୍କ ନିକଟକୁ ପଠାଇଲେ । ଆସନ୍ତା କାର୍ତ୍ତିକ ପୂର୍ଣ୍ଣମୀ ଦିନ ସେ ହିମାଳୟ ଶୃଙ୍ଗକୁ ଆସିଲେ ମାତଳି ତାଙ୍କୁ ରଥରେ ବସାଇ ସ୍ୱର୍ଗକୁ ନେଇ ଆସିବ । ନାରଦ ଯାଇ ଦେବବ୍ରତଙ୍କୁ ଦେବତା ମାନଙ୍କ ସିଦ୍ଧାନ୍ତ ଜଣାଇଲେ । ଦେବବ୍ରତ ନିଜର ଘର ବାଡ଼ି ଯାହାକିଛି ଥିଲା ସବୁ ବିକାଭଙ୍ଗା କରି ଧନତକ ଦୁଃଖୀ ଦରିଦ୍ର ମାନଙ୍କ ମଧ୍ୟରେ ଅଯାଚିତ ଭାବେ ବାଣ୍ଟି ବାଣ୍ଟି

ଗଲିଲେ । ହିମାଳୟ ନିକଟସ୍ଥ ହେବାବେଳକୁ ସମସ୍ତ ଧନ ବିତରଣ କରି ସାରିଥା'ନ୍ତି । ଠିକ୍ ସେତେବେଳେ କଳହୀ ବୋଲି ଏକ ପିଶାଚୀ ଦେବବ୍ରତଙ୍କର ମନୋଭବ ଜାଣି ମାନବୀ ବେଶରେ ଯାଇ ଦେବବ୍ରତଙ୍କୁ ଭିକ୍ଷା ମାଗିଲା । ଦେବବ୍ରତ କହିଲେ, ହେ ଭଦ୍ରେ ! ବର୍ତ୍ତମାନ ମୋ ପାଖରେ ଆଉ କିଛି ନାହିଁ ।' କଳହୀ କହିଲା, 'ମୁଁ ଯାହା ମାଗିବି ଆପଣ ବର୍ତ୍ତମାନ ଦେବାକୁ ସକ୍ଷମ ହୋଇ ପାରିବେ; କିନ୍ତୁ ମାଗିବା ପୂର୍ବରୁ ଆପଣ ସତ୍ୟ କରନ୍ତୁ ।' ଦେବବ୍ରତ କଳହୀ କଥାରେ ତିନିବାର ସତ୍ୟ କଲେ । କଳହୀ କହିଲେ, 'ହେ ମହାତ୍ମା ! ଆପଣ ସ୍ୱଦେହରେ ସ୍ୱର୍ଗକୁ ଯାଉଛନ୍ତି । ମୋର ଏହି ଭିକ୍ଷା ଆପଣ ମୋତେ ସଙ୍ଗରେ ସ୍ୱର୍ଗକୁ ନେଇ ଯାଆନ୍ତୁ ।' ଦେବବ୍ରତ କଳହୀଙ୍କୁ ସଙ୍ଗରେ ନେଇ ହିମାଳୟ ଶୃଙ୍ଗରେ ପହଞ୍ଚିଲେ । ଦେବତାମାନେ ଦେବବ୍ରତଙ୍କୁ ଅଭିନନ୍ଦନ କରି ନେବାପାଇଁ ପ୍ରସ୍ତୁତ ରହି ମାତଳିଙ୍କୁ ପଠାଇଲେ । ମାତଳି ଆସି ହିମାଳୟ ଶୃଙ୍ଗରେ ରଥ ରଖି ଦେବବ୍ରତଙ୍କୁ ରଥରେ ବସିବାକୁ କହିଲେ । ଦେବବ୍ରତ କଳହୀକୁ ରଥରେ ବସିବାକୁ କହିବାରୁ ମାତଳି ମନାକଲେ । କହିଲେ, ହେ ମହାତ୍ମା ! ଆପଣଙ୍କ ବ୍ୟତୀତ ମୁଁ ଅନ୍ୟ କାହାକୁ ରଥରେ ନେଇ ପାରିବି ନାହିଁ ।' ଦେବବ୍ରତ ଉତ୍ତର ଦେଲେ, 'ତୁମେ ଯଦି କଳହୀକୁ ନ ନେବ ତେବେ ମୁଁ ଯାଇପାରିବି ନାହିଁ । ତୁମେ ରଥ ଫେରାଇ ନେଇଯାଅ ।' ମାତଳି ରଥ ଫେରାଇ ନେଇଗଲେ । ଦେବତାମାନେ ଖାଲି ରଥ ଦେଖି ମାତଳିଙ୍କୁ ପଚାରିଲେ । ମାତଳି ସମସ୍ତ ବିବରଣ ବୁଝାଇ କହିଲେ । ଦେବତାମାନେ ସିଦ୍ଧାନ୍ତ କଲେ, 'ଯଦି ଆମେ ଦେବବ୍ରତଙ୍କୁ ସ୍ୱଦେହରେ ସ୍ୱର୍ଗକୁ ନ ଆଣିବା ମର୍ତ୍ତ୍ୟପୁରରେ କେହି ବ୍ରତ ଉପାସନା ଦାନ ଧର୍ମ କରିବେ ନାହିଁ ।' ଏହା ସ୍ଥିର କରି ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ସହ ସମସ୍ତ ଦେବତା ପୁନରାୟ ହିମାଳୟ ଶୃଙ୍ଗକୁ ଆସି ବହୁ ପ୍ରକାର ଦେବବ୍ରତଙ୍କୁ ବୁଝାଇଲେ । କିନ୍ତୁ ଦେବବ୍ରତ କଳହୀ ନଗଲେ ସ୍ୱର୍ଗକୁ ଯିବେ ନାହିଁ ବୋଲି ଜିଦ୍ ଧରି ବସିଲେ । ନାରାୟଣ କହିଲେ, 'ହେ ମହାତ୍ମା, ଆପଣ ଯେଉଁ ଧର୍ମବଳରେ ସ୍ୱର୍ଗକୁ ଯାଉଛନ୍ତି ସେ ଧର୍ମରୁ ଅଧେ କଳହୀକୁ ପ୍ରଦାନ କଲେ କଳହୀ ସ୍ୱର୍ଗକୁ ଯିବାକୁ ସକ୍ଷମ ହୋଇପାରିବ ।'

ଏ କଥା ଶୁଣି ଦେବବ୍ରତ ଶଙ୍ଖରେ ପାଣି ଟେକି କାର୍ତ୍ତିକ ବ୍ରତ ଫଳରୁ ଅର୍ଦ୍ଧେକ କଳହୀ କି ଦାନକଲେ । ସେହିଦିନଠାରୁ ଧର୍ମ ଦାନ କରିଥିବା ହେତୁ ଧର୍ମଦତ୍ତ ନାମରେ ନାମିତ ହେଲେ । କଳହୀ ଯାଇ ସ୍ଵର୍ଗରେ ରହିଲା । କିନ୍ତୁ ସ୍ୱର୍ଗପୁରରେ ଥାଇ କଳହୀ ଇନ୍ଦ୍ର, ବରୁଣ ଘରେ ଯମ, ଶନିଙ୍କ ଘରେ କଳହ ଲଗାଇବାକୁ ଲାଗିଲା । ସ୍ୱର୍ଗପୁରରେ ଶାନ୍ତିମୟ ଜୀବନ ଯାପନ କରୁଥିବା ଦେବତାମାନେ କଳହୀ ଯୋଗୁଁ ଅଶାନ୍ତିର ବାତାବରଣରେ ବ୍ୟତିବ୍ୟସ୍ତ ହୋଇ ଉଠିଲେ । ଦେବବୃନ୍ଦ ଏ ବିଷୟ ନାରାୟଣଙ୍କୁ ଜଣାଇ ପ୍ରାର୍ଥନା କଲେ । ନାରାୟଣ ଦେବତାମାନଙ୍କ ଦୁଃଖ ମୋଚନ କରିବା ପାଇଁ କଳହୀ ଦ୍ୱାରରେ ପ୍ରବେଶ କରି କହିଲେ, 'ହେ କଳହୀ ! ତୁମ ନିକଟରେ ମୋର ଗୋଟିଏ ଭିକ୍ଷା ଅଛି । ତୁମେ ଦେଇ ପାରିବ ତ ?' କଳହୀ ନାରାୟଣଙ୍କୁ ସମାଦରେ ବସାଇ କହିଲେ ହେ ପ୍ରଭୁ ! ଆପଣଙ୍କ ଯୋଗୁଁ ମୋର ଏଇ ସ୍ୱର୍ଗ ଭୁବନରେ ବାସ । ଆପଣଙ୍କୁ ଅଦେୟ ହୋଇ ମୋର କିଛି ନାହିଁ । ଆପଣ ଯାହା ମାଗିବେ ମୁଁ ଅଯାଚିତ ଭବେ ଦେବି ।' ଭଗବାନ କଳହୀ କଥାରେ ସନ୍ତୋଷ ହୋଇ କହିଲେ, 'ହେ ଭଦ୍ରେ ! ତୁମର ଏ କଳହୀ ପ୍ରକୃତିଟି ମୋତେ ଦାନକର ।' କଳହୀ କହିଲେ, 'ପ୍ରଭୁ ଅତିଶୀଘ୍ର ଆପଣ ସେ ଗୁଣଟି ଗ୍ରହଣ କରନ୍ତୁ । ଏ ମନ୍ଦଗୁଣ ଯୋଗୁଁ ମୁଁ ଜଗତରେ ଘୃଣ୍ୟ ।' ଠାକୁର କହିଲେ, ହେ କଳହୀ ଏ ପ୍ରକାରେ ତ ମୁଁ ଗ୍ରହଣ କରି ପାରିବି ନାହିଁ । ତୁମେ ସେ କଳହୀ ଗୁଣ ମୋତେ ଦେବା ପାଇଁ ପୁଣି ମର୍ତ୍ତ୍ୟପୁରରେ କେକେୟ ରାଜାଙ୍କ କନ୍ୟା ରୂପେ କୈକେୟୀ ନାମ ଧରି ଜନ୍ମଲାଭ କରିବ । ଦଶରଥ ତୁମ ପାଣି ଗ୍ରହଣ କରିବେ । ମୁଁ କୌଶଲ୍ୟାଙ୍କ ଗର୍ଭରୁ ରାମ ରୂପରେ ଜନ୍ମ ହେବି । ମୋର ଅଭିଷେକ ସମୟରେ ତୁମେ ସେ କଳହୀ ପ୍ରକୃତି ପ୍ରଦର୍ଶାଇ ମୋତେ ବଣକୁ ପଠାଇବ । ମୁଁ ପିତୃସତ୍ୟ ପାଳନ କରି ଚଉଦ ବର୍ଷ ବଣକୁ ଯିବି । ତୁମ ପୁତ୍ର ଭରତ ତୁମ ଗୁଣକୁ ଧିକ୍କାର କରି ମୋତେ ଫେରାଇବାକୁ ଚିତ୍ରକୂଟ ଯିବ । ତୁମେ ତାଙ୍କ ସହିତ ଯାଇଥିବ । ମୁଁ ତୁମଠାରୁ ସେତିକିବେଳେ ସେ ଗୁଣ ଗ୍ରହଣ କରିବି ! ସେତେବେଳେ ହିଁ ତୁମ ପାପର ପ୍ରାୟଶ୍ଚିତ୍ତ ହେବ । ଏକଥା

ଶୁଣି କଳହୀ ତତ୍କ୍ଷଣାତ୍ ପ୍ରଭୁଙ୍କୁ ପ୍ରଣାମ କରି ମର୍ତ୍ତ୍ୟ ଭୁବନରେ କୈକେୟଙ୍କ ଔରସରେ ଜନ୍ମ ହେଲେ ।

—କାର୍ତ୍ତିକ ମହାତ୍ମ୍ୟ—

୩୪ ପଦ —

**ବୃକ୍ଷରାଜପର ସାକେତ ନଗରୀ**

**କର ଅଲକ୍ଷ୍ମୀ ଆଶ୍ରିତ ।**

**ବାର ରବର କୈକେୟୀ ଆୟୁରୁ**

**ଅପ୍ସରଣ ହୋଇଯାନ୍ତୁ ॥**

**ବଳଦଳ ଚଳନ,**

**ବଣ ମନ୍ତ୍ରୁ କରଣୀ ମନ ॥ ୩୪ ॥**

ରବିବାରେ ଅଶ୍ୱତଥ ବୃକ୍ଷ ପରି କୈକେୟୀଙ୍କ ଯୋଗେ ଅଯୋଧ୍ୟା—

ସମୁଦ୍ର ମନ୍ଥନ ପରେ ଲକ୍ଷ୍ମୀଙ୍କୁ ବିବାହ କରି ବିଷ୍ଣୁ ବୈକୁଣ୍ଠକୁ ଗଲିଗଲେ । କିନ୍ତୁ ଲକ୍ଷ୍ମୀ ସଦାବେଳେ ମୁହଁ ଶୁଖାଇ ବସିଥା'ନ୍ତି । ଦିନେ ଭଗବାନ ପଗ୍ଭରିଲେ, କମଳା ! ତୁମର ଏଠାରେ କ'ଣ ଅଭାବ ? ତୁମେ କାହିଁକି ମୁହଁ ଶୁଖାଇ ବସୁଅଛ ?' ଲକ୍ଷ୍ମୀଉତ୍ତର ଦେଲେ, 'ପ୍ରଭୁ ! ମୋର ଏଠାରେ କୌଣସି ଅଭାବ ନାହିଁ । କିନ୍ତୁ ମୋ ବାପା ସବୁବେଳେ ଚିନ୍ତିତ । ଏଣୁ ମୋ ମନ ସେହି ଚିନ୍ତାରେ ଦୁଃଖିତ ।' ନାରାୟଣ କହିଲେ, 'ପ୍ରିୟେ ! ତୁମ ପିତା କାହିଁକି ଚିନ୍ତିତ ?' ଲକ୍ଷ୍ମୀ କହିଲେ, 'ହେ ପ୍ରଭୁ ! ମୁଁ ହେଉଛି ସାନଝିଅ । ମୋର ବିବାହ ସରିଲା । କିନ୍ତୁ ମୋର ବଡ଼ ଭଉଣୀ ଏ ପର୍ଯ୍ୟନ୍ତ ବିବାହ ନ ହୋଇ ବାପ ଘରେ ରହିଛନ୍ତି । ତାଙ୍କ ଚିନ୍ତାରେ ବାପା ଚିନ୍ତିତ । ମୁଁ ମଧ୍ୟ ଦୁଃଖିତ ।' ନାରାୟଣ ପଗ୍ଭରିଲେ, 'ତୁମର ଆଉ ଜଣେ ବଡ ଭଉଣୀ ଅଛନ୍ତି, ତାଙ୍କ ନାମ କ'ଣ ?' ଲକ୍ଷ୍ମୀ ଉତ୍ତର ଦେଲେ, 'ମୋ ବଡ ଭଉଣୀଙ୍କ ନାମ

ଅଲକ୍ଷ୍ମୀ । ଆପଣ କୌଣସି ଉତ୍ତମ ବର ସ୍ଥିର କରି ତା ବିବାହ କାର୍ଯ୍ୟ ସମାପନ କରନ୍ତୁ । ମୋର ଚିନ୍ତା ଦୂର ହେବ ।' ଭଗବାନ ବିଷ୍ଣୁ ଭାବିଲେ ମୋର ସନ୍ତୁ ହେବାକୁ ଏପରି ଲୋକ କାହାକୁ ସ୍ଥିର କରିବି ।' କିଛିଦିନ ପରେ ମହର୍ଷି ଉଦ୍ଦାଳକଙ୍କ ସହିତ ପ୍ରଭୁଙ୍କର ସାକ୍ଷାତ ହେଲା । ସେ ମହାନ୍ ବେଦଦର୍ଶୀ ଜାଣି ନାରାୟଣ ଉଦ୍ଦାଳକଙ୍କୁ କହିଲେ, ହେ ଋଷି ପ୍ରବର, ତୁମ ସହିତ ମୁଁ ବନ୍ଧୁତ୍ୱ ସ୍ଥାପନ କରିବାକୁ ଇଚ୍ଛା କରିଛି । ମୋର ଗୋଟିଏ ଦେଢଶାଶୁ ଅଛନ୍ତି । ତୁମେ ତାଙ୍କ ପାଣି ଗ୍ରହଣ କର । ତୁମର ମୋର ଦୃଢ଼ ସନ୍ତୁ ହେବ ।' ଉଦ୍ଦାଳକ ତ ଲକ୍ଷ୍ମୀଙ୍କୁ ଦେଖିଛନ୍ତି । ତାଙ୍କ ଗୁଣ ବିଷୟରେ ସବୁ ଜାଣିଛନ୍ତି । ସେ ଭାବିଲେ, ଲକ୍ଷ୍ମୀଙ୍କ ଭଉଣୀ ନିଶ୍ଚୟ ଲକ୍ଷ୍ମୀଙ୍କ ପରି ଗୁଣବତୀ ହୋଇଥିବେ !' ତେଣୁ ସେ ସଙ୍ଗେ ସଙ୍ଗେ ସମ୍ମତି ପ୍ରଦାନ କଲେ । ଅଲକ୍ଷ୍ମୀଙ୍କ ସହିତ ଉଦ୍ଦାଳକଙ୍କର ବିବାହ ହେଲା । ଅଲକ୍ଷ୍ମୀ ଉଦ୍ଦାଳକଙ୍କ ଆଶ୍ରମକୁ ନବବଧୂ ସାଜି ଆସିଲେ । କିନ୍ତୁ ଅଲକ୍ଷ୍ମୀଙ୍କ ବ୍ୟବହାର ଉଦ୍ଦାଳକଙ୍କୁ ଅସହ୍ୟ ହେଲା । ଋଷି ଘରଦ୍ୱାର ଗୋମୟ ଦ୍ୱାରା ପରିଷ୍କାର କରି ଘୃତାହୁତି ଦ୍ୱାରା ଯଜ୍ଞ କଲେ ଅଲକ୍ଷ୍ମୀ ଦୂରରେ ବସି ମୁହଁରେ ଲୁଗାଦେଇ କାନ୍ଦୁଥା'ନ୍ତି । ଋଷି ଚାଲିଗଲେ ଅଲକ୍ଷ୍ମୀ ଘରକୁ ଆମିଷ ପୂତି ଗନ୍ଧ ଦ୍ୱାରା ଅପରିଷ୍କାର କରି ରଖୁଥା'ନ୍ତି । ଏପରି ମତାନ୍ତର ହେବାରେ ଋଷି ଉଦ୍ଦାଳକ ଅଲକ୍ଷ୍ମୀଙ୍କୁ ଛାଡ଼ି ତପସ୍ୟା କରିବାକୁ ହିମାଳୟ ଶୃଙ୍ଗକୁ ଚାଲିଗଲେ । ଅଲକ୍ଷ୍ମୀ ସେଦିନ ସ୍ୱାମୀଙ୍କ ଠାରୁ ଭର୍ତ୍ସନା ପାଇ ଗୋଟିଏ ଅଶ୍ୱତ୍ଥ ବୃକ୍ଷ ମୂଳରେ ବସି କ୍ରନ୍ଦନ କଲେ । ଭଉଣୀର ଅବସ୍ଥା ଜାଣି ଲକ୍ଷ୍ମୀ ନାରାୟଣଙ୍କୁ କହିବାରେ ନାରାୟଣ ଗରୁଡ଼ ପୃଷ୍ଠରେ ଯାଇ ଅଲକ୍ଷ୍ମୀଙ୍କ ସହିତ ଦେଖା ହେଲେ ।

ଅଲକ୍ଷ୍ମୀ ଭଗବାନଙ୍କୁ ଦେଖି ବ୍ୟାକୁଳ କ୍ରନ୍ଦନ କଲେ । ନାରାୟଣ କହିଲେ, 'ହେ ଭଦ୍ରେ ! ତୁମେ କାନ୍ଦନାହିଁ । ମୁଁ ପୁଣି ତୁମ ପାଇଁ ଉପଯୁକ୍ତ ପାତ୍ର ଖୋଜି ତୁମକୁ ବିବାହ ଦେବି ।' ଅଲକ୍ଷ୍ମୀ କହିଲେ, ହେ ଭଗବନ ! ଆପଣ ଯଦି ମୋ ପାଇଁ ବ୍ୟାକୁଳ, ତେବେ ତିନିବାର ସତ୍ୟ କରନ୍ତୁ । ମୁଁ ଯାହା ମାଗିବି ମୋତେ ଦେବେ ।' ଭଗବାନ

ସତ୍ୟ କରିବାରେ ଅଲକ୍ଷ୍ମୀ କହିଲେ, 'ହେ ପ୍ରଭୁ ! ମୋ ପାଇଁ ଅନ୍ୟ ବର ସ୍ଥିର ନକରି ଆପଣ ମୋତେ ଗ୍ରହଣ କରନ୍ତୁ ।' ନାରାୟଣ ନିରୁପାୟ ହୋଇ କହିଲେ, 'ହେ ଭଦ୍ରେ ! ତୁମେ ମୋତେ ସତ୍ୟ କରାଇ ଯେଉଁ ଅନୀତି କଲ ଏହା ସମୀଚୀନ ହେଲନାହିଁ । ଆଜି ଶନିବାର । ଏ ଅଶ୍ୱତ୍ଥ ବୃକ୍ଷ ମୂଳରେ ତୁମେ ମୋତେ ସତ୍ୟ କରାଇଲ । ତେଣୁ ଆଜି ଦିନରେ ମୁଁ ତୁମ ସହିତ ଏ ବୃକ୍ଷରେ ସ୍ଥାନ ନେବି । ଆଜି ଅଶ୍ୱତ୍ଥ ବୃକ୍ଷକୁ ଯେ ପୂଜା କରିବ ସେ ଲକ୍ଷ୍ମୀ ନାରାୟଣଙ୍କ ପୂଜାଫଳ ପାଇବ । କିନ୍ତୁ ଆଜି ଦିନ ଗଲେ ଆସନ୍ତା କାଲି ଯେଉଁ ବ୍ୟକ୍ତି ଏ ବୃକ୍ଷକୁ ଛୁଇଁବ ତୁମେ ତା'ର କାନ୍ଧରେ ଯିବ ।'

— ହରିବଂଶ

—୪୦୪—

## ଅଷ୍ଟାଦଶ ଛାନ୍ଦ

ଦଶମ ପଦ—

ବିଶ୍ରାମନ୍ତି ସେହ୍ନ କାଳ ଜୀବନ ଯିବାର ମୂଳ
ଦେଖିଲୁ ଅଶୁଭ ସ୍ୱପ୍ନ ମହର୍ଷୀ ଯେ ।
କୀର-ଗଣେଶ ଶ୍ରୀରାମ ମୂଷିକ କରଣେ କ୍ଷମ
ଯମକୁ ସେ ହୋଇନାହୁଁ ଗାଣୀ ଯେ ॥ ୧୦ ॥

ଗଣେଶ ଯମକୁ ମୂଷା କରି ରଖିଲେ କାହିଁକି ?

ପୁରାଣ କଥା — ମୃକଣ୍ଡ ଋଷିଙ୍କର ସନ୍ତାନ ସନ୍ତତି ନ ଥିବାରୁ ଶିବଙ୍କୁ ସେବା କରି ବର ପାଇଲେ । ଶିବ କହିଲେ, 'ହେ ମୃକଣ୍ଡ ! ତୁମେ ଗୋଟିଏ ଗୁଣବନ୍ତ ପୁଅ ଚାହଁ ନା ଅଯୋଗ୍ୟ ଶହେ ପୁଅ ଚାହଁ । ଶହେପୁଅ ଅଳ୍ପାୟୁ ହେବେ ଏବଂ ଗୋଟିଏ ପୁଅ ବାରବର୍ଷରେ ମରିବ ।' ମୃକଣ୍ଡ ଚିନ୍ତା କରି 'ଗୁଣବନ୍ତ ପୁଅ ଗୋଟିଏ ହେଉ' ବୋଲି ବର ମାଗିନେଲେ । କିଛିଦିନ ପରେ ଗୋଟିଏ ପୁତ୍ର ଜନ୍ମ ହେଲା । ତା'ର ନାମ ଦେଲେ

ମାର୍କଣ୍ଡେୟ । ମାର୍କଣ୍ଡେୟ ଯେତେବେଳେ ବାରବର୍ଷରେ ପଦାର୍ପଣ କଲେ ସମସ୍ତ ଶାସ୍ତ୍ରରେ ସେ ଦକ୍ଷତା ଅର୍ଜନ କରି ସାରିଥିଲେ । ମାର୍କଣ୍ଡେୟଙ୍କୁ ଦେଖି ପିତାମାତା ବ୍ୟାକୁଳ ହେଉଥାନ୍ତି । ଏହି ବର୍ଷଟି ପୂର୍ଣ୍ଣ ହେଲେ ପୁଅ ଇହଲୀଳା ତ୍ୟାଗ କରିବ । ଏଣୁ ମନ ଶଙ୍କାଇ ସଦାସର୍ବଦା ଚିନ୍ତାମଗ୍ନ ରହନ୍ତି । ଦିନେ ମାର୍କଣ୍ଡେୟ ପିତାମାତାଙ୍କୁ ମନ ଦୁଃଖର କାରଣ ପଚାରି ବୁଝିଲେ ଏ ବର୍ଷ ଶେଷରେ ତାଙ୍କର ପରମାୟୁ ଶେଷ ହେଉଛି । ତେଣୁ ମାର୍କଣ୍ଡେୟ ପିତାମାନଙ୍କୁ ସାନ୍ତ୍ୱନା ଦେଇ ମରିବାର ପୂର୍ବଦିନଠାରୁ ଶିବାଳୟକୁ ଯାଇ ଶିବଙ୍କ ଲିଙ୍ଗମୂର୍ତ୍ତିକୁ ଧରି ମହାମୃତ୍ୟୁଞ୍ଜୟ ମନ୍ତ୍ର ପାଠ କରିବାରେ ଲାଗିଲେ । ପରଦିନ ଯମଦୂତମାନେ ଆସି ମାର୍କଣ୍ଡେୟଙ୍କୁ ନେବାକୁ ଶିବାଳୟ ଭିତରେ ପ୍ରବେଶ କରିପାରିଲେ ନାହିଁ । ସେତେବେଳକୁ ଯମ ଥିଲେ କାଳକେୟ । କାଳକେୟ ଯମ ନିଜେ ସୈନ୍ୟ ସଜ କରି ଶିବଙ୍କ ନିକଟକୁ ଆସିଲେ । କହିଲେ, 'ହେ ଦିଗମ୍ବର, ତୁମେ ମାର୍କଣ୍ଡେୟଙ୍କୁ ଛାଡ଼ିଦିଅ ।' ଶିବ କିନ୍ତୁ ତା'ର ପ୍ରତିରୋଧ କରି ମାର୍କଣ୍ଡେୟଙ୍କୁ ଛାଡ଼ିଲେ ନାହିଁ । ଫଳତଃ ମାର୍କଣ୍ଡେୟଙ୍କ ପ୍ରାଣ ନେବାକୁ ଯମ ଜବରଦସ୍ତ ପାଶ ଫିଙ୍ଗିଲେ ଓ ଯମଗଣ ଓ ଶିବଗଣଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ହେଲା । ସେତେବେଳେ ଗଣେଶ ଯମକୁ ମୂଷାକରି ବାହାନ କରିନେଲେ ।

— ମାର୍କଣ୍ଡେୟ ପୁରାଣ

—୪୦୪—

**ଦ୍ୱାଦଶ ପଦ-**

**ବଡ଼ମା ହର ମନ୍ଦରେ ସେ ନୃପ ଯେଣୁ ବସ୍ତରେ**
**ଛୈଳପାଏ ତେଣୁ କଲେ ଦାନ ସେ ।**
**ବହୁତୁ ଭରତ ପାଶେ ପ୍ରେଷଣ କଲେ ଚଉସେ**
**ନଷ୍ଟ ବଦ୍ୟା ପ୍ରାପ୍ତ ରଚ ଆନ ସେ ।। ୧୨ ।।**

ଶନି କୋପ ଦୃଷ୍ଟିର ଫଳ –

ଥରେ ଅଯୋଧ୍ୟାରେ ବାରବର୍ଷ ଅନାବୃଷ୍ଟି ହେଲା । ଦଶରଥ ଇନ୍ଦ୍ରଙ୍କ ଉପରେ ରାଗି ଯୁଦ୍ଧ କରିବାକୁ ବାହାରିଲେ । ଇନ୍ଦ୍ର ଶରଣ ପଶି କହିଲେ, 'ହେ ମହାରାଜ, ଏଥିରେ ମୋର କିଛି ଦୋଷ ନାହିଁ । ଆପଣଙ୍କ ରାଜ୍ୟରେ ଶନି ଦୃଷ୍ଟି ପଡ଼ିଥିବାରୁ ଅନାବୃଷ୍ଟି ହୋଇଛି ।' ତେଣୁ ଦଶରଥ ଶନୈଶ୍ଚର ମଣ୍ଡଳକୁ ଯୁଦ୍ଧ ଅଭିପ୍ରାୟରେ ରଥ ଚଳାଇଲେ । ଶନିଙ୍କ ପଛେ ପଛେ ଦଶରଥଙ୍କ ରଥ ଚାଲିଛି । ଶନି ଟିକିଏ ଆଡ଼ଦୃଷ୍ଟିରେ ଚାହିଁଦେବାରେ ଦଶରଥଙ୍କ ସାରଥି ଜଳିଗଲା ଏବଂ ରଥ ଦଉଡ଼ି ଛିଡ଼ିଗଲା । ରଥଟି ତଳକୁ ଖସି ଆସିଲା । ଏତିକିବେଳେ ଜଟାୟୁ ଦେଖିଲା, ଦଶରଥ ତଳେ ପଡ଼ି ନିଶ୍ଚୟ ମୃତ୍ୟୁବରଣ କରିବେ । ତେଣୁ ସଦୟ ହୋଇ ଜଟାୟୁ ତା'ର ପୃଷ୍ଠରେ ରଥଟିକୁ ଧରିନେଲା । ଦଶରଥ ଆଶ୍ୱସ୍ତ ହୋଇ ଦେଖିଲେ ଜଟାୟୁ ତାଙ୍କୁ ଏ ବିପଦରୁ ରକ୍ଷା କରିଛି । ତେଣୁ ଦଶରଥ ଜଟାୟୁ ସହିତ ମିତ୍ର ହେଲେ । କହିଲେ, 'ହେ ମିତ୍ର, ତୁମେ ମୋର ଉପକାର କରି ପ୍ରାଣ ରକ୍ଷା କଲ । ଆଉ ଗୋଟିଏ ଉପକାର କର । ମୋ ରଥ ଅଣବାହୁଡ଼ା । ତୁମେ ଶନୈଶ୍ଚର ମଣ୍ଡଳକୁ ଚାଲ । ମୁଁ ତାଙ୍କ ସହିତ ଯୁଦ୍ଧ କରିବି ।' ତେଣୁ ଜଟାୟୁ ରଥ ଓ ଦଶରଥଙ୍କୁ ନେଇ ଶନୈଶ୍ଚର ମଣ୍ଡଳକୁ ଗଲା । ସେଠାରେ ଦଶରଥ ଏପରି ଗୋଟିଏ ଶର ଧନୁରେ ଯୋଖିଲେ ଯାହା ତେଜରେ କି ଶନି ମ୍ରିୟମାଣ ହୋଇ ଦଶରଥଙ୍କୁ ବର ଦେଲେ । ତୁମ ଜୀବଦଶାରେ ମୁଁ ତୁମ ରାଜ୍ୟରେ ଦୃଷ୍ଟି ପକାଇବି ନାହିଁ ।

– ରାମାୟଣ

୨୩ ପଦ –

**ବିନାୟକ ଲମ୍ବୋଦର ହେଲେ ହେଲେ ଗଣେଶ୍ୱର**
**ଭାଗ ଟେକିଲେ ଭାଗ ଟଭାଟେ ଦେଲେ ଯେ ।**
**ବାଲଚନ୍ଦ୍ର ଯେ ଅଛନ୍ତି ରାମ ହେଲେ ସେହିମତ**
**ହୁଅ ନୃପ ଦଶରଥ ବୋଇଲେ ଯେ ॥ ୨୩ ॥**

ଗଣେଶଙ୍କର ରାଜଗାଦୀ ପ୍ରାପ୍ତି –

ଦିନେ ଶିବ, ଗଣେଶ ଓ କାର୍ତ୍ତିକେୟଙ୍କୁ ପରୀକ୍ଷା କରିବାକୁ କହିଲେ । ତୁମ ଦୁହିଁଙ୍କ ମଧ୍ୟରୁ ଯେ ପ୍ରଥମେ ବ୍ରହ୍ମାଣ୍ଡ ପ୍ରଦକ୍ଷିଣ କରି ଆସିବ ସେ କାଶିପୁରର ରଜା ହେବ । ଏକଥା ଶୁଣି କାର୍ତ୍ତିକେୟ ମୟୂର ପୃଷ୍ଠରେ ବସି ତତ୍‌କ୍ଷଣାତ୍ ବାହାରି ପଡ଼ିଲେ । ସୁଚତୁର ଗଣେଶ ମୂଷା ପିଠିରେ ବସି ଶିବଙ୍କ ଚାରିପାଖରେ ସାତଥର ପ୍ରଦକ୍ଷିଣ କରି କହିଲେ, 'ହେ ଜନକ, ବର୍ତ୍ତମାନ ମୁଁ ସାତଥର ବ୍ରହ୍ମାଣ୍ଡ ପ୍ରଦକ୍ଷିଣ କରି ସାରିଲିଣି । ଏ ପର୍ଯ୍ୟନ୍ତ ଅଗ୍ରଜ ଆସିନାହାଁନ୍ତି ।' ଶିବ ପଚାରିଲେ, 'ତୁମେ ତ ମୋ ନିକଟରୁ ଯାଇନାହଁ । କିପରି ବ୍ରହ୍ମାଣ୍ଡ ପ୍ରଦକ୍ଷିଣ କଲ ?' ଗଣେଶ କହିଲେ, 'ହେ ପ୍ରଭୁ, ସୃଷ୍ଟି ବେଦରୁ ଉତ୍ପନ୍ନ । ବେଦ ଆପଣଙ୍କ ବୃଷଭର ଚାରିପାଦ ଏଣୁ ଆପଣ ବେଦାରୂଢ଼ ନାମ ଧାରଣ କରିଛନ୍ତି । ଏ ବେଦକୁ ପ୍ରଦକ୍ଷିଣ କରିବା ଯାହା ବ୍ରହ୍ମାଣ୍ଡ ପ୍ରଦକ୍ଷିଣ କରିବା ତାହା । ଶିବ ସନ୍ତୋଷ ହୋଇ ଗଣେଶଙ୍କୁ ରଜା କରଇଦେଲେ ।'

–ଶୈବପୁରାଣ

୫·୫

୩୮ ପଦ –

ବୋଇଲେ କୈକେୟୀ ସୁତ ଦୈତ୍ୟମାତାଠାରୁ ଜାତ
ହେଉବାତ ଇନ୍ଦ୍ର ଘାତ କଲ ହେ ।
ବଶ୍ୟାପୀ ତାଙ୍କର ହେଲା ଦେବ ହୋଇ ନ ଧଇଲା
ଚନ୍ଦଗୁଣ ମୁହଁ ସେହିପରି ହେ ॥ ୩୮ ॥

ପବନଙ୍କ ଜନ୍ମ ଓ ଦେବତ୍ୱ ପ୍ରାପ୍ତି —

ଅଦିତିଙ୍କ ପୁତ୍ରମାନେ ପ୍ରତିଭାବାନ୍ ହୋଇ ରାଜା ହେବାରୁ ଦିତି ମନ ଦୁଃଖରେ କଶ୍ୟପଙ୍କୁ ସେବା କରି ବର ମାଗିଲେ, 'ମୋର ଏପରି ଗୋଟିଏ ପୁତ୍ର ହେବା ଦରକାର ଯେଉଁ ପୁତ୍ର କି ଦେବତାମାନଙ୍କଠାରୁ ଶକ୍ତିଶାଳୀ ଓ କୀର୍ତ୍ତିବାନ୍ ହେବ ।' କଶ୍ୟପ ସନ୍ତୁଷ୍ଟ ହୋଇ ସେହି ବର ପ୍ରଦାନ କଲେ । କିଛିଦିନ ପରେ ଦିତି ହେଲେ ଅନ୍ତଃସତ୍ତ୍ୱା । ଦିତିଙ୍କର ଗର୍ଭର ତେଜ ଦେଖି ଇନ୍ଦ୍ରାଦି ଦେବତାମାନେ ଥରି ଉଠିଲେ । ଏ ପୁତ୍ର ଜନ୍ମ ହେଲେ ସମଗ୍ର ଦେବକୁଳଙ୍କୁ ତା'ର ଦାସତ୍ୱ ସ୍ୱୀକାର କରିବାକୁ ପଡ଼ିବ । ଏଥିକି ଉପାୟ କ'ଣ ? ଦେବତାମାନେ ଚିନ୍ତା କରି ଉପାୟ ଖୋଜି ବୁଲିଲେ । ଦିନେ ଦିତି ଗର୍ଭଭର ଯୋଗୁଁ ଅର୍ଦ୍ଧନଗ୍ନ ଅବସ୍ଥାରେ ଶୟନ କରିଛନ୍ତି । ଇନ୍ଦ୍ର ଏ ସୁଯୋଗ ପାଇ ଦିତିଙ୍କ ଗର୍ଭ ମଧ୍ୟରେ ପ୍ରବେଶ କରି ବଜ୍ର ଦ୍ୱାରା ଗର୍ଭର ସନ୍ତାନଟିକୁ ସାତଖଣ୍ଡ କରି କାଟି-ଦେଲେ । ପୁଣି ଖଣ୍ଡକୁ ସାତଖଣ୍ଡ କରି ପକାଇଲେ । ଏପରି ଅଣଚାଶ ଖଣ୍ଡ ହୋଇ ଗର୍ଭସ୍ଥ ସନ୍ତାନଟି ନମରି ଜନ୍ମଲାଭ କଲା । ଦିତି ଏକଥା ଜାଣି ଇନ୍ଦ୍ରଙ୍କୁ ଅଭିଶାପ ଦେବାକୁ ଗଲାବେଳେ ଇନ୍ଦ୍ର ଦିତିଙ୍କ ପାଦତଳେ ପଡ଼ି ଶରଣ ଯାଇ କହିଲେ, 'ମା', ମୁଁ ବର୍ତ୍ତମାନ ତୋ ଗର୍ଭରେ ଥିଲି ଏଣୁ ତୁ ମୋର ଜନ୍ମଦାତ୍ରୀ । ମା' ହୋଇ ପୁଅର ଦୋଷ ମାର୍ଜ୍ଜନା ନକଲେ ଏ ସୃଷ୍ଟିରେ 'ମା' ନାମ କଳଙ୍କିତ ହେବ ।' ଏଣୁ ଦିତି ସନ୍ତୋଷରେ ଅଣଚାଶ ପବନଙ୍କୁ ଇନ୍ଦ୍ରଙ୍କ ହସ୍ତରେ ଅର୍ପଣ କଲେ । କହିଲେ, 'ହେ ବାସବ, ଏ ତୋର ସୋଦର । ଏହାକୁ ତୁ ନିଜ ପାଖରେ ରଖିବୁ ।'

— ବାୟୁପୁରାଣ

## ବଂଶ ଗୁଚ୍ଛ

୧୮ ପଦ —

ବନନ୍ତ ବର୍ଷ ଭାରତୀ ଶୁଣି ଭଣି ପ୍ରୀତ ମତ ମନୋହାରୀ
ବୃନ୍ଦା ଅସୁରୀ ତୁଳସୀ କରି ହରି ଶିରେ ଧୋଇଲାର ପଛ ।

ତୁଳସୀଙ୍କୁ ନାରାୟଣ ମସ୍ତକରେ ଧାରଣ କରିବା –

ଜଳନ୍ଧର ରାକ୍ଷସ ପତ୍ନୀ ସତୀଶିରୋମଣି ବୃନ୍ଦାବତୀ । ବୃନ୍ଦାବତୀଙ୍କ ସତୀତ୍ୱ ବଳରେ ରାକ୍ଷସ ଜଳନ୍ଧର ମହା ପ୍ରତାପୀ ଦିଗ୍‌ବିଜୟୀ ହୋଇ ଶିବଙ୍କ ସହିତ ଯୁଦ୍ଧ କଲା । ଶିବ ରାକ୍ଷସକୁ ଜୟ କରି ନପାରିବାରେ ନାରାୟଣ ଜଳନ୍ଧର ରୂପ ଧାରଣ କରି ବୃନ୍ଦାଙ୍କ ସତୀତ୍ୱ ହରଣ କଲେ । ଶିବଙ୍କ ହସ୍ତରେ ଜଳନ୍ଧର ମୃତ୍ୟୁ ବରଣ କଲା । ବୃନ୍ଦା ଏକଥା ଜାଣି ନାରାୟଣଙ୍କୁ ଅଭିଶାପ ଦେଲେ ତୁମେ ପାଷାଣ ହୋଇଯାଅ । ନାରାୟଣ ବୃନ୍ଦାଙ୍କୁ ବୃକ୍ଷ ହେବାକୁ ଅଭିଶାପ ଦେଲେ । ସେହି ବୃକ୍ଷ ତୁଳସୀ ରୂପରେ ଜନ୍ମ ହେଲେ ଏବଂ ବିଷ୍ଣୁ ସଦା ସର୍ବଦା ତୁଳସୀଙ୍କୁ ଶିରରେ ଧାରଣ କଲେ ।

କାର୍ତ୍ତିକ ମହାତ୍ମ୍ୟ ହରିବଂଶ

( ଶ୍ରୀକୃଷ୍ଣ ଖଣ୍ଡ )

## ଏକବିଂଶ ଛାନ୍ଦ

୨୬ ପଦ –

ବହୁ ଈଶ୍ୱର ପଦ-ଇକ୍ଷ୍ୱାକୁରେ
ବଭ୍ରୁ ଅଟନ୍ତି ସଦା ଇକ୍ଷ୍ୱାକୁଟରେ ।
ବହନ୍ତେ ପଥ ଅଦ୍ରି ମଠେ ମିଳେ
ବାଧୁ ହେଲା ଯାହା ଲୋଚନ ମିଳେ ।
ବାଞ୍ଛିଲେ ସୁକଲ୍ୟାଣ ସୁଦସ୍ମା
ବନ୍ଦିଲେ ସୀତା ଦେଖି ଅନାସ୍ମସ ।

ଚନ୍ଦ୍ରଙ୍କ ଉତ୍ପତ୍ତି—

ଅତ୍ରିଙ୍କ ନୟନରୁ ଲୋତକ ଝରିଲା । ସେ ଲୋତକ ପୃଥିବୀ ଉପରେ ପଡ଼ିଲେ ପୃଥିବୀ ଧ୍ୱଂସ ହୋଇଯିବ ଜାଣି ଅତ୍ରି ସେ ବିନ୍ଦୁଟି ବରୁଣଙ୍କୁ ଦେଲେ । ବରୁଣ ନିଃସନ୍ତାନ ଥାଇ ଅତ୍ରିଙ୍କ ସେବାରେ ନିଯୁକ୍ତ ଥିଲେ । ସେ ଅକ୍ଷୟ ଲୋତକ ବିନ୍ଦୁଟି ସାଗର ଗର୍ଭରୁ ଚନ୍ଦ୍ରରୂପେ ଜାତ ହେଲା । ବିନ୍ଦୁଏ ଲୋତକରୁ ଜାତ ହେବାରୁ ତାଙ୍କ ନାମ ଇନ୍ଦୁ ।

—ଚନ୍ଦ୍ର ପୁରାଣ

୨୭ ପଦ—

ବଳୋଇଁ ଅମ୍ଲାନ ଶାଢ଼ୀ କ ଶୋଭା
        ଜଗତ୍ୟ କାନ୍ତି ଦର୍ପଣରେ ଯା ପ୍ରଭା ।

ଧୋଇଲେ ବନେ ରଜକ ମାନ୍ଦ୍ରୁଁ
        ବହ୍ନିରେ ଧୌତ ଯେବେ ମ୍ଲାନ ହୋଇ ।

ବୈଦେହୀ, ଶତ୍ରୁ ହସ୍ତେ ଯାନ୍ତ୍ର,
        ବଡ଼ ଆନନ୍ଦ ଶୁଣି ରାମଚନ୍ଦ୍ର ॥ ୨୭ ॥

ଅନସୂୟାଙ୍କୁ ଅମ୍ଲାନ ଶାଢ଼ୀ ପ୍ରାପ୍ତି —

ଅତ୍ରିଙ୍କ ପତ୍ନୀ ଅନସୂୟା ମହାସତୀ । ତାଙ୍କ ସତୀତ୍ୱ ପ୍ରଭାରେ ଲକ୍ଷ୍ମୀ, ସାବିତ୍ରୀ ଓ ପାର୍ବତୀ ଲଜ୍ଜିତା ହୋଇ ଅନସୂୟାଙ୍କର ସତୀତ୍ୱ ନଷ୍ଟ କରିବା ପାଇଁ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କୁ ପ୍ରାର୍ଥନା କଲେ । ଦେବ ତ୍ରୟ ବ୍ରାହ୍ମଣ ବେଶରେ ଯାଇ ଅନସୂୟାଙ୍କୁ ସତ୍ୟ କରାଇ କହିଲେ— "ତୁମେ ଉଲଗ୍ନ ହୋଇ ଆମକୁ କୋଳ କରି ପ୍ରୀତି ଚୁମ୍ବନ ଦିଅ ।" ସତୀ ଅନସୂୟା ଠାକୁରମାନଙ୍କର ମନୋଭାବ ଜାଣି ନିଜ ସତୀତ୍ୱ ବଳରେ

ତିନି ଠାକୁରଙ୍କୁ ବାଳକ କରାଇ କୋଳରେ ଧରି ପ୍ରୀତିଚୁମ୍ବନ ଦେଲେ । ତିନି ଠାକୁର ପିଲା ହୋଇ ଅନସୂୟାଙ୍କ କୁଟୀରରେ ରହିଯିବାରେ ସୃଷ୍ଟି ଅଚଳ ହେଲା । ତେଣୁ ଇନ୍ଦ୍ର, ଚନ୍ଦ୍ର, ବରୁଣ ଆଦି ସମସ୍ତ ଦେବତା ଅତ୍ରିଙ୍କ ଆଶ୍ରମକୁ ଯାଇ ତିନି ଠାକୁରଙ୍କୁ ମୁକ୍ତି ଦେବା ପାଇଁ ଅନସୂୟାଙ୍କୁ ପ୍ରାର୍ଥନା କଲେ । ଅତ୍ରିଙ୍କ ଆଦେଶରେ ଅନସୂୟା ତିନିଠାକୁରଙ୍କୁ ମୁକ୍ତ ଦେଲେ ଏବଂ ତ୍ରିନାଥ ଏକମୂର୍ତ୍ତୀ ଧାରଣ କରି ଦତ୍ତାତ୍ରୟ ନାମରେ ଅତ୍ରିଙ୍କ ଆଶ୍ରମରେ ରହିଲେ । ସେତେବେଳେ ଦେବତାମାନେ ଅନସୂୟାଙ୍କୁ ସନ୍ତୁଷ୍ଟ କରିବାକୁ ଉପଢୌକନମାନ ଦେଇଥିଲେ । ସୂର୍ଯ୍ୟଦେବ ଅମ୍ଳାନ ଶାଢୀ ଅର୍ପଣ କରିଥିଲେ ।

—ଚନ୍ଦ୍ର ପୁରାଣ

## ଏକୋନତ୍ରିଂଶ ଛାନ୍ଦ

୪ର୍ଥ ପଦ –

**ବଣାଧଇର୍ଯ୍ୟ ହୋଇ ସେ ରାମ ବଣରେ ।**
**ବର୍ଣ୍ଣରଇ ପୁନରୁକ୍ତ ବଦା ଭାସରେ ॥ ୪ ॥**

ସୂର୍ପଣଖା ପଞ୍ଚବଟୀ ଆସିବାର କାରଣ—

ସୂର୍ପଣଖା ଯେତେବେଳେ ଯୌବନ ପ୍ରାପ୍ତା ହେଲା ରାବଣ ସ୍ୱୟମ୍ବର କରି ସୂର୍ପଣଖାର ବିବାହ ପାତାଳପୁର ରାକ୍ଷସରାଜ ବିଦ୍ୟୁଜ୍ଜିହ୍ୱା ସହିତ କରାଇ ବିଦାୟ ଦେଲା । ସୂର୍ପଣଖା ସ୍ୱାମୀସହ ଚାଲିଯିବା ପରେ ରାବଣ ଏକମାତ୍ର ଭଉଣୀର ବିଚ୍ଛେଦରେ ଦୁଃଖିତ ହୋଇ ମୁହଁ ଶୁଖାଇ ବସିଛି । ନାରଦ ଆସି ପହଞ୍ଚିଲେ । ସେ ତା'ର ଦୁଃଖର କାରଣ ପଚାରିବାରେ ରାବଣ କହିଲା, ଜେଜେ ! ଭଉଣୀ ସୂର୍ପା ଚାଲିଯିବାରୁ ଘରଟି ଖାଲି ଖାଲି ଲାଗୁଛି ।" ନାରଦ କହିଲେ, "ରାବଣ, ତୁ ବଡ଼ ଜ୍ଞାନୀ ଓ ସୁଚତୁର ବୋଲି ମୋର ଧାରଣା ଥିଲା । ଆଜି ଜାଣିଲି ତୁ ଗୋଟିଏ ଗଣ୍ଡମୂର୍ଖ । ଜାଣି ଜାଣି ମରଣକୁ ବରଣ କଲୁ ।" ରାବଣ ପଚାରିଲା, 'କିପରି ?'

ନାରଦ କହିଲେ, "ତୁ ଗତ ଦିନ କଥା ମନେ ପକା ।" ଯେତେବେଳେ ତୁମେ ଦୁଇଭାଇ ଜନ୍ମ ହୋଇ ଋଷିମାନଙ୍କ ଯଜ୍ଞ ନଷ୍ଟ କଲ ସେତେବେଳେ ଋଷିମାନେ ବିଶ୍ରବାଙ୍କ ନିକଟରେ ତୁମ ବିରୁଦ୍ଧରେ ଅଭିଯୋଗ କରିଥିଲେ । ବିଶ୍ରବା ତୁମ ମା' ନିକଷାଙ୍କୁ ଭର୍ତ୍ସନା କରି କହିବାରେ ତୁମ ମା' ତୁମ ଦୁଇଭାଇଙ୍କୁ ଡିଆରି ମାଡ଼ ମାଇଲେ । ମା'ଙ୍କ ବେତ୍ରାଘାତ ପାଇଁ ପରଦିନ ତୁମ ଦୁଇଭାଇ ଋଷିମାନଙ୍କୁ ମାରି ଋଷି ରକ୍ତରେ ଧରାକୁ ପ୍ଲାବିତ କଲ । ଭୟରେ ଅନ୍ୟାନ୍ୟ ଋଷିମାନେ ସେ ସ୍ଥାନ ଛାଡ଼ି ଚାଲିଗଲେ ଏବଂ ଅଭିଶାପ ଦେଲେ, ରେ ରାବଣ ! ଯେଉଁ ବ୍ରହ୍ମ ରୁଧିର ଧରା ବକ୍ଷରେ ବହାଇ ଦେଇଛୁ ସେ ରକ୍ତ ତୋ ବଂଶକୁ ବିନାଶ କରିବ । ବ୍ରହ୍ମ ଅଭିଶାପକୁ ବ୍ୟର୍ଥ କରିବାକୁ ଇଚ୍ଛା କରି ତୁ ସେହି ରକ୍ତକୁ ଗୋଟିଏ ମାଠିଆରେ ଭରି ମା' ନିକଷାକୁ ଦେଇ କହିଥିଲୁ, 'ମା' ଏଥିରେ ହଳାହଳ ବିଷ ଅଛି । ଏ ବିଷ ରାକ୍ଷସ ବଂଶ ଧ୍ୱଂସ କରିବ । ଏହାକୁ ସୁବିଧାରେ ରଖିଥାଅ ।' ମା' ନିକଷା ସେ ରୁଧିରକୁ ନିଜ ପାଖରେ ରଖିଥିଲେ । ପ୍ରାଣ ନେଇ ପଳାଇଥିବା ଋଷିମାନେ ତୋର ପିତାଙ୍କୁ ତୁମର ଉପଦ୍ରବ କଥା କହିବାରେ ସେ ଗୃହକୁ ଆସି ତୋର ମା'କୁ ଗାଳିଗୁଲଜ କରି କହିଲେ, "ମୋ ସନ୍ତାନ ହୋଇ ସେମାନେ ରାକ୍ଷସ ବୃତ୍ତି ଧାରଣ କଲେ । ଏଥିରେ ତୁମେ ମୋର ଘରଣୀ ବୋଲି କହିବାକୁ ଲଜ୍ଜା ଲାଗୁଛି । ସ୍ୱାମୀଙ୍କ ଭର୍ତ୍ସନା ସହି ନ ପାରି ତୋ ମା' ନିକଷା ପ୍ରାଣ ହରାଇବା ଉଦ୍ଦେଶ୍ୟରେ ସେ ବ୍ରହ୍ମ ରୁଧିରକୁ ବିଷ ଜ୍ଞାନ କରି ପାନ କଲେ । କିନ୍ତୁ ବ୍ରହ୍ମ ଅଭିଶାପ ଅଖଣ୍ଡ । ସେ ରୁଧିରରୁ ବିଭୀଷଣ ଓ ସୂର୍ପଣଖାର ଜନ୍ମ ହେଲା । ତୁ ଏକଥା ନିଜେ ଜାଣେ କିପରି ସୂର୍ପାକୁ ବିବାହ ଦେଲୁ ?" ରାବଣ ପୂର୍ବ କଥା ସ୍ମରଣ କରି ବିଚାରକଲା, ଭଉଣୀକୁ ମାରିଲେ ଦେଶ ତଥା କୁଳରେ ନିନ୍ଦନୀୟ ହେବି । ଏପରି ଉପାୟ କରିବି ସୂର୍ପାର ଗର୍ଭରୁ କୌଣସି ସନ୍ତାନ ଜନ୍ମ ହେବାକୁ ଦେବି ନାହିଁ କି ସୂର୍ପା ମୋର ଶତ୍ରୁ ହେବନାହିଁ । ଏହି କଥା ବିଚାର କରି କିଛିଦିନ ପରେ ପାତାଳପୁର ନାଗରାଜାଙ୍କ ସହିତ ଯୁଦ୍ଧ କରିବାକୁ ଇଚ୍ଛା କରି ରାବଣ ସୈନ୍ୟ ନେଇ ପାତାଳପୁରକୁ ଧାଡ଼ି ଦେଲା । ବିଦ୍ୟୁଜ୍ଜିହ୍ୱା ନୂତନ ବନ୍ଧୁ ରାବଣ ସପକ୍ଷରେ ସୈନ୍ୟ ସଜାଇ ଯୁଦ୍ଧପାଇଁ ଅଗ୍ରସର ହେଲା ।

ନାଗରଜାର ବିଷଜ୍ୱାଳାରେ ରାକ୍ଷସମାନେ ହତଜ୍ଞାନ ହେବାର ଦେଖି ରାବଣ ଅତିରିକ୍ତ ମଦ୍ୟପାନ କରି ମଦ ବିହ୍ୱଳରେ ସମସ୍ତ ନାଗ ସୈନ୍ୟ ବିନାଶ କରିବାରେ ଲାଗିଲା । ତତ୍ ସଙ୍ଗେ ସଙ୍ଗେ ମତିଭ୍ରମ ହୋଇ ନିଜର ଭିଣୋଇ ବିଦ୍ୟୁଜିହ୍ୱାର ମୁଣ୍ଡଟି ମଧ୍ୟ କାଟି ଦେଲା । ତା'ର ଦେହରକ୍ଷୀ ବିଦ୍ୟୁଜିହ୍ୱାର ମୃତ୍ୟୁ ସମ୍ବାଦ ସୂର୍ପଣଖା ନିକଟରେ ଜଣାଇଦେଲା । ସେତେବେଳକୁ ସୂର୍ପଣଖା ଅନ୍ତଃସତ୍ତ୍ୱା । ଏକଥା ରାବଣ ଜାଣେନା । ସୂର୍ପା ସ୍ୱାମୀଙ୍କର ଗୁଣଗାଣି କାନ୍ଦୁଛି । ରାବଣ ଯୁଦ୍ଧରୁ ଫେରି ସୂର୍ପାର ବୈଧବ୍ୟ ବେଶ ଦେଖି କାରଣ ପଚାରନ୍ତେ ସୂର୍ପଣଖା ବ୍ୟାକୁଳ ହୋଇ କହିଲା, "ଭାଇ ହୋଇ ତୁମେ ନିଜ ହାତରେ ବିଧବା କରାଇଲ ।" ରାବଣ କହିଲା, "ଭଉଣୀ, ମୁଁ ଯଦି ତୋ ସ୍ୱାମୀଙ୍କୁ ମାରି ତୋତେ ବିଧବା ସଜାଇଛି ତା'ର ପ୍ରାୟଶ୍ଚିତ୍ତ ମୁଁ କରିବି । ମୋର ତିନିଶତ ପାଟରାଣୀ ତୋର ଦାସୀ ପରି ସେବା କରିବେ । ତୁ ମୋ ସହିତ ଲଙ୍କାକୁ ଚାଲି-ଆସ ।" ସୂର୍ପା ଭାବିଲା, "ମୋର ସ୍ୱାମୀଙ୍କୁ ମାରି ଏ ରାବଣ ମୋତେ ବିଧବା କରିଛି । ମୁଁ ତା ଘରେ ରହି ମୋର ଗର୍ଭସ୍ଥ ସନ୍ତାନକୁ ଶିକ୍ଷା ଦେଇ ତା'ରି ହସ୍ତରେ ରାବଣକୁ ମାରି ମୋ ସ୍ୱାମୀହନ୍ତାର ପ୍ରତିଶୋଧ ନେବି ।" ଏହି କଥା ଚିନ୍ତା କରି ସୂର୍ପଣଖା ରାବଣ ସହିତ ଲଙ୍କାକୁ ଆସିଲା । ବିଧାତାର ଘଟସୂତ୍ର । ସେତେବେଳେ ମନ୍ଦୋଦରୀ ଅନ୍ତଃସତ୍ତ୍ୱା ଥିଲେ । କିଛିଦିନ ପରେ ମନ୍ଦୋଦରୀ ପୁତ୍ରଟିଏ ପ୍ରସବ କଲେ । ପୁତ୍ରଟି ଜନ୍ମ ହୋଇ ଏପରି ଗର୍ଜନ କଲା ଯେ, ସେ ଗର୍ଜନ ମେଘକୁ ଜିଣିଗଲା । ତେଣୁ ରାବଣ ସେ ପୁତ୍ରଟିର ନାମ ଦେଲା ମେଘନାଦ । ସୂର୍ପା ସ୍ୱାମୀଙ୍କୁ ଅନ୍ତରରେ ଜପି ଜପି ପୁଅଟିଏ ପାଇଲା । ତେଣୁ ପୁଅଟିର ନାମ ଦେଲା ଜପାସୁର । ଜପା ଏବଂ ମେଘନାଦ ସମବୟସ୍କ । ଦିନେ ଦୁଇଜଣ ଖେଳୁ ଖେଳୁ କଳହ ଲାଗିଲା । ମହାପ୍ରତାପୀ ଜପା ମେଘନାଦକୁ ମାଡ଼ିବସି ବିଧା ମାରିବାରେ ଲାଗିଲା । ତଳେ ପଡ଼ି ମେଘନାଦ ଚିତ୍କାର କରୁଛି । ଏ ଘଟଣା ଦେଖି ମନ୍ଦୋଦରୀ ଭାବିଲେ, ଏ ଜପାସୁର ବଡ଼ ହେଲେ ଲଙ୍କା କଟକ ଛଡ଼ାଇ ଆମ୍ଭମାନଙ୍କୁ ଅବସ୍ଥା କରିବ । କାରଣ ଲଙ୍କା କଟକ ନିକଷାର ଯୌତୁକ ଧନ । ମା' ନାମରେ ଥିବା ସମ୍ପତ୍ତିରେ ପୁଅର ଅଧିକାର ନାହିଁ । ତେଣୁ ଏ ଲଙ୍କାଟି

ସୂର୍ପଣଖାର । ଏହି କଥା ଚିନ୍ତା କରି ମନ୍ଦୋଦରୀ ରାବଣକୁ ଜଣାଇଲା । ରାବଣ ରାଜକୀୟ କୂଟନୀତି ଛଳରେ ପରଦିନ ସୂର୍ପଣଖାକୁ ଡକାଇ କହିଲା, 'ଭଉଣୀ, ଏ ତିନିଶତ ପଚାଶ ରାଣୀଙ୍କ ସମ୍ମୁଖରେ ତୋତେ ବିଧବା ଦଶାରେ ଦେଖିଲେ ମୋ ବକ୍ଷ ବିଦୀର୍ଣ୍ଣ ହେଉଛି । ଏଣୁ ମୁଁ ସିଦ୍ଧାନ୍ତ କରିଛି ତୋତେ ଗୋଟିଏ ରାଜ୍ୟ ଦେଇ ସେଠାରେ ରଖାଇ ଦେବି । ସେଥିରେ ଆମ ଦୁହିଁଙ୍କର ଉପକାର ହେବ । ସେ ସ୍ଥାନଟି ମିଥିଳା ନିକଟ ଜନପଦ । ତୋତେ ଚଉଦ ହଜାର ସୈନ୍ୟସହ ଖର, ଦୂଷଣ, ତ୍ରିଶିରଃ ତିନି ସେନାପତି ସହ ସେଠାରେ ରାଣୀ କରାଇ ଦେବି । ତୁ ସେଠାରେ ରହି ସୁଖରେ ଚଳିବା ସଙ୍ଗେ ସଙ୍ଗେ ମିଥିଳାର ଖବର ପ୍ରତ୍ୟହ ମୋତେ ଜଣାଉଥିବୁ ।

କାରଣ ମିଥିଳାରେ ମୋର କାଳ ଜନ୍ମ ହେବ – ଏ କଥା ନାରଦ କହିଛନ୍ତି । ତେଣୁ ଏଥିରେ ସୂର୍ପଣଖା ରାଜି ହୋଇ ଜନପଦରେ ରାଜତ୍ୱ କଲା । ଦିନେ ଜମ୍ପାସୁର ଲଙ୍କାନଗର କଥା ମନେ ପକାଇ ସୂର୍ପାକୁ ପଚାରିଲା, 'ମା, ଆମେ ମାମୁଁ ଘରେ ବଡ଼ ଆନନ୍ଦରେ ଥିଲେ । ତୁ କାହିଁକି ଏଠାକୁ ଆସିଲୁ ?' ସୂର୍ପା ଉତ୍ତର ଦେଲା, 'ବାପ, ତୁ ଗୋଟିଏ ହତଭାଗା । ଗର୍ଭରେ ଥିଲାବେଳେ ପିତାଙ୍କୁ ହରାଇଲୁ । ତୋ ଜୀବନରେ ସୁଖ ନାହିଁ ।' ଜମ୍ପ ସୁର ପଚାରିଲା, 'ମା, ପିତା କିପରି ମଲେ ଏବଂ କିଏ ତାଙ୍କୁ ମାରିଲା ?' ସୂର୍ପା ସମସ୍ତ ବିବରଣୀ ଆମୂଳଚୂଳ କହିଗଲା । 'ପିତୃହନ୍ତା ନିଜେ ତାର ମାମୁଁ' – ଏକଥା ଶୁଣି ଜମ୍ପାସୁର ପିତୃହନ୍ତାର ପ୍ରତିଶୋଧ ନେବାକୁ ପ୍ରତିଜ୍ଞା କଲା । ଜମ୍ପାସୁର ପ୍ରତିଜ୍ଞା ଶୁଣି ସୂର୍ପା କହିଲା, 'ବାପ, ତୁ ପଞ୍ଚବଟୀ ବଣରେ ଶିବଙ୍କୁ ଆରାଧନା କରି ତପସ୍ୟା କରି ବରପ୍ରାପ୍ତ ହୁଅ । ତାପରେ ରାବଣ ସହିତ ଯୁଦ୍ଧକରି ପିତୃହନ୍ତାର ପ୍ରତିଶୋଧ ନେବୁ ।' ମାଆଙ୍କ ଆଦେଶରେ ଜମ୍ପା କଠୋର ତପସ୍ୟା କଲା । ଏପରିକି ତେତିଶ କୋଟୀ ଦେବତା ତପସ୍ୟାରେ ଥରି ଉଠିଲେ । ଏହିପରି ତପସ୍ୟାରେ ଗୋଟିଏ ଉଇହୁଙ୍କା ଜମ୍ପା ଉପରେ ଉଠିଗଲା । ତଥାପି ଜମ୍ପା ତପସ୍ୟା ଭଙ୍ଗ ନକରି ଶିବ ପଞ୍ଚାକ୍ଷର ଜପିବାରେ ଲାଗିଥାଏ ।

ଭାଗବତ ପ୍ରମାଣ–

ଯେ ଜନ ତପ ଆଚରନ୍ତି
ଦେବେ ତାହାଙ୍କ ବାଧନ୍ତି ।

ଜପାର ତପସ୍ୟା ନଷ୍ଟ କରିବାକୁ ଇନ୍ଦ୍ର ଚିନ୍ତିତ । ସେତେବେଳକୁ ଭଗବାନ ରାମ·ରୂପରେ ଜନ୍ମ ହୋଇ ସୀତାଙ୍କୁ ବିବାହ କରି ପିତାଙ୍କ ଆଦେଶରେ ଗଣ୍ଡା ମାରିବାକୁ ଆସିଛନ୍ତି । ଠିକ୍ ସମୟରେ ଇନ୍ଦ୍ର ମାୟାକରି ମେଘ ଓ ପବନଦ୍ୱାରା ରାମଚନ୍ଦ୍ରଙ୍କ ଭାଇ ଓ ସୈନ୍ୟମାନଙ୍କୁ ଭିନ୍ନ କରାଇ ରାମଚନ୍ଦ୍ରଙ୍କୁ ପଞ୍ଚବଟୀ ପର୍ଯ୍ୟନ୍ତ ନେଇଗଲେ । ରାମ ପଥଭ୍ରଷ୍ଟ ହୋଇ ବୁଲିବା ସମୟରେ ଇନ୍ଦ୍ର ଗୋଟିଏ ଗଣ୍ଡା ରୂପରେ ରାମଚନ୍ଦ୍ରଙ୍କୁ ଦେଖାଦେଲେ । ରାମ ପିତାଙ୍କ ଆଦେଶରେ ଗଣ୍ଡା ମାରିବାକୁ ଆସିଥିଲେ । ତେଣୁ ସେ ମାୟା ଗଣ୍ଡାକୁ ମାରିବାକୁ ତାର ଅନୁଧାବନ କଲେ । ସେ ମାୟାଗଣ୍ଡା ଯେଉଁଠି ଜପା ତପସ୍ୟା କରୁଛି ସେହି ହୁଙ୍କା ନିକଟରେ କ୍ଲାନ୍ତ ହୋଇ ଠିଆ ହେଲା । ଗଣ୍ଡାଟି କ୍ଳାନ୍ତ ହେବାର ଜାଣି ରାମଚନ୍ଦ୍ର ଧନୁରେ ତୀର ସଂଯୋଗ କରି ଛାଡ଼ିଦେଲେ । ଗଣ୍ଡାଟି ଅନ୍ତର୍ଦ୍ଧାନ ହୋଇଗଲା । ଶରଟି ଉଇହୁଙ୍କା ଭେଦ କରି ଜପାସୁର ବକ୍ଷ ଭେଦକଲା । ଜପାସୁର ଚିତ୍କାର କରି ପ୍ରାଣ ବିସର୍ଜନ କଲା । ରାମଚନ୍ଦ୍ର ଭାବିଲେ, 'ଏ ଦୁଷ୍ଟ ରାକ୍ଷସ ଗଣ୍ଡା ରୂପରେ ମୋତେ ଏତେଦୂର ନେଇ ଆସିଥିଲା ।' ତାପରେ ରାମଚନ୍ଦ୍ର ବଣ ଭିତରେ ବୁଲି ବୁଲି ଗୁହକ ଶବର ସହିତ ମିତ୍ର ହୋଇ ଭାଇ ଓ ସୈନ୍ୟମାନଙ୍କୁ ଏକତ୍ରିତ କରି ଅନ୍ୟ ଏକ ଗଣ୍ଡା ମାରି ଅଯୋଧ୍ୟାକୁ ଫେରି ଆସିଲେ ।

ସୂର୍ପଣଖା ନିକଟରେ ନାରଦ ଜପାସୁରର ମୃତ୍ୟୁ ଖବର ଜଣାଇ ଦେଲେ । ସୂର୍ପା ପୁତ୍ରହନ୍ତା ରାମଙ୍କୁ ମାରିବାକୁ ଉଦ୍ୟତ ହୁଅନ୍ତେ ନାରଦ କହିଲେ, 'ନାତୁଣୀ ତୁ ଅଯୋଧ୍ୟାକୁ ଯାଇ ରାମଙ୍କୁ ମାରି ପାରିବୁ ନାହିଁ । ତୁ ଅପେକ୍ଷା କର । ପିତାସତ୍ୟ ପାଳନକରି ରାମ ପଞ୍ଚବଟୀ ବନକୁ ଆସିବେ । ତୁ ସେତେବେଳେ ତୋର ପୁତ୍ରହନ୍ତାର ପ୍ରତିଶୋଧ ନେବୁ ।' 'ରାମ କେଉଁଦିନ ବଣକୁ ଆସିବେ ଓ ତାଙ୍କୁ ମାରି ମୋର ପୁତ୍ରଶୋକ

ଦୂରକରିବି’ – ଏଇକଥା ଚିନ୍ତାକରି ସୂର୍ପା ପ୍ରତିଦିନ ଜନପଦରୁ ପଞ୍ଚବଟୀକୁ ଯାଉଥାଏ । ସମୟକ୍ରମେ ରାମଚନ୍ଦ୍ରଙ୍କୁ ଯେତେବେଳେ ସେ ଦେଖିଲା ତାର ପୂର୍ବ ଧୈର୍ଯ୍ୟ ଟଳିପଡ଼ିଲା, ଶ୍ରୀରାମଙ୍କ ଦିପ୍ତୀ ଦେଖି ଭାବିଲା – ‘ଏ ରାମକୁ କଳେବଳେ ବିବାହ କଲେ ଏହା ଔରସଜାତ ପୁତ୍ରଦ୍ୱାରା ବିନାତପସ୍ୟାରେ ମଧ୍ୟ ମୋର ସ୍ୱାମୀହନ୍ତା ରାବଣର ପ୍ରତିଶୋଧ ନେଇ ପାରିବି ।’ ଏହା ଚିନ୍ତାକରି ରାମଙ୍କ ପ୍ରତି ବୈରୀଭାବ ନ ନେଖାଇ ନିଜର ଆୟତ୍ତାଧୀନ କରିବା ପାଇଁ ଚେଷ୍ଟାକଲା ।

– କମ୍ବୋନ ରାମାୟଣ

## ଚତୁର୍ବିଂଶ ଛାନ୍ଦ

୨୩ ପଦ –

ବୋଲନ୍ତି ମଧୁ ପକାଇ ଭେଦେ
ପୁଣି ମହୀଶ ଆପଣ
ବାନ୍ଧି ଜା ଦୁର୍ଗା ନୋଭେ
ଯାହା ହୋଇଲା ତାହାକି ନ ଜାଣ ।
ବଳେ ଯେ ଯାହାରେ ଊଣା
ସେ ତାହାରେ ଆରମ୍ଭେ କି ଦ୍ୱନ୍ଦ୍ୱ
ବନ୍ଧୁ ଅହଂ ବୁଦ୍ଧିମାନ ଫଳୁ
ସିଦ୍ଧି ଉପୁଜେ ଯେ ମନ୍ଦ ।। ୨୩ ।।

ମଧୁଦୈତ୍ୟ ବଧ ଓ ପୃଥିବୀ ଉତ୍ପତ୍ତି –

ସୃଷ୍ଟି ପ୍ରଳୟ ପରେ ନାରାୟଣ ଅନନ୍ତନାଗ ଉପରେ ଶୟନ କରିଛନ୍ତି । ଲକ୍ଷ୍ମୀ ପଦସେବା କରୁଛନ୍ତି । ଅନ୍ତର୍ଯାମୀ ପରମେଶ୍ୱର ସୃଷ୍ଟି ନିର୍ମାଣ କରିବାକୁ ଇଚ୍ଛାକରି ନିଜର କର୍ଣ୍ଣମୂଳରୁ କିଛି ମଳି ବାହାରକରି ସମୁଦ୍ର ଗର୍ଭକୁ ନିକ୍ଷେପ କଲେ । ଦୁଇ କର୍ଣ୍ଣମୂଳ ମଳିରୁ ଦୁଇଟି ଦୈତ୍ୟ ଜନ୍ମ ହେଲେ । ତାଙ୍କର ନାମ ମଧୁ ଓ କୈଟଭ । ପ୍ରଳୟ ଜଳ

ସେମାନଙ୍କୁ ଆଣ୍ଠୁଆଣି ହେଲା । ସେମାନେ ଯାଇ ଅନନ୍ତ ନିକଟରେ ପହଞ୍ଚି ଲକ୍ଷ୍ମୀଙ୍କୁ ଦେଖି କହିଲେ, 'ହେ ବରାନନେ ! ତୁମେ ଏ ନିଦ୍ରିତ ଯୁବକକୁ ଛାଡ଼ି ଆମକୁ ପତି ରୂପରେ ବରଣ କର ।' ଲକ୍ଷ୍ମୀ କହିଲେ, 'ଏ ସୁପ୍ତ ବ୍ୟକ୍ତି ମୋର ସ୍ୱାମୀ । ତୁମେ ତାଙ୍କ ନିଦ୍ରାଭଙ୍ଗ କରି ଯୁଦ୍ଧରେ ଜୟଲାଭ କରି ମୋତେ ନେଇପାର । ମୋର ସ୍ୱାମୀ ଥାଉଁ ଥାଉଁ ମୁଁ ସ୍ୱଇଚ୍ଛାରେ ଦ୍ୱିତୀୟ ପତି ଗ୍ରହଣ କରିବି କିପରି ?' ଏକଥା ଶୁଣି ମଧୁ ଓ କୈଟଭ ନାରାୟଣଙ୍କ ନିଦ୍ରା ଭଙ୍ଗିବାପାଇଁ ତାଙ୍କୁ ଚଣା ଓଟର କଲେ । ମାତ୍ର ନାରାୟଣ ଉଭୟଙ୍କୁ ନିଜର ଜାନୁ ଉପରକୁ ଟେକି ଆଣି ମର୍ଦ୍ଦନ କଲେ ଏବଂ ଏକ ପିଣ୍ଡୁଳା କରି ସମୁଦ୍ର ବକ୍ଷକୁ ଫିଙ୍ଗି ଦେଲେ । ସେ ମାଂସ ମେଦାଦି ପୃଥିବୀ ହୋଇ ରହିଲା ।

— ବ୍ରହ୍ମାଣ୍ଡ ପୁରାଣ

ମହିଷାସୁର ବଧ —

ମହିଷାସୁରର ଉପଦ୍ରବ ସହି ନପାରି ଦେବତାମାନେ ନାରାୟଣଙ୍କୁ ପ୍ରାର୍ଥନା କରିବାରେ ପ୍ରଭୁ ସମସ୍ତ ଦେବତାଙ୍କ କଳା ସନ୍ନିହିତ କରି ନିଜର ତେଜ ମିଶାଇ ଦୁର୍ଗାଙ୍କୁ ଆବିର୍ଭାବ କରାଇଲେ । ଦୁର୍ଗା ଦେବତାମାନଙ୍କ ହିତ କାମନା କରି ରତ୍ନଗିରି ଉପରେ ରହି ମହିଷାର ସେନାପତିମାନଙ୍କୁ ବିନାଶ କରିଥିଲେ । ଶେଷରେ ମହିଷାସୁର ଦୁର୍ଗାଙ୍କ ରୂପମାଧୁରୀରେ ବଶୀଭୂତ ହୋଇ ପ୍ରାଣ ଦେଲା ।

— ଚଣ୍ଡୀ ପୁରାଣ ଓ ଦେବୀ ଭାଗବତ

**୪୪ ପଦ** -

**କାଙ୍କ୍ଷି ଅଗସ୍ତି ଉଦରେ ଜୀର୍ଣ୍ଣ ମତ୍ତ ଏକଣି ହୁଅନ୍ତୁ ।**
**ବୈଦେହୀ ସ୍ୱାହୁ କହୁ**
**ଦେହ ଛଦାର ମୁଖ ହ୍ରୋଞ୍ଚି ହେତୁ ।। ୪୪ ।।**

ଅଗସ୍ତିଙ୍କ ସମୁଦ୍ରକୁ ଚଳୁ କରିବା —

ଅଗସ୍ତିଙ୍କୁ ଦେବତାମାନେ ରାକ୍ଷସକୁଳ ନିପାତ କରିବାକୁ ପ୍ରାର୍ଥନା କଲେ । ଅଗସ୍ତି ଆତାପୀ ବାତାପୀ ଇତ୍ୟାଦିଙ୍କୁ ମାରିବାପରେ ଅନ୍ୟ

ରାକ୍ଷସମାନେ ସମୁଦ୍ର ଗର୍ଭରେ ଲୁଚି ରହିଲେ । ଅଗସ୍ତି ବରୁଣଙ୍କୁ କହିଲେ । କିନ୍ତୁ ବରୁଣ ଅଗସ୍ତିଙ୍କ କଥା ଶୁଣିଲେ ନାହିଁ । ତେଣୁ ଅଗସ୍ତି ସପ୍ତସମୁଦ୍ର ଚଳୁକରି ପିଇଦେଲେ ଏବଂ ଦୁର୍ଦ୍ଦାନ୍ତ ରାକ୍ଷସମାନଙ୍କୁ ବିନାଶ କଲେ । ସମୁଦ୍ରାଧିପତି ବରୁଣ ଅଗସ୍ତିଙ୍କ ଶରଣ ନେଇ ସତ୍ୟ କଲେ ଯେ ସେ କୂଳ ଲଙ୍ଘନ କରିବେ ନାହିଁ । ପରେ ଗଙ୍ଗା ଦ୍ୱାରା ସାଗର ପୂର୍ଣ୍ଣ ହେଲା ।

— ଗଙ୍ଗା ମହାତ୍ମ୍ୟ

## ପଞ୍ଚବିଂଶ ଛାନ୍ଦ

ଦ୍ୱିତୀୟ ପଦ -

ବିମଳ ହେମନ୍ତ ଚନ୍ଦ୍ର ସେ ନ ମାରୁ ମଣ
ବସିଲା କଳଙ୍କ ହୋଇ ଆଉଙ୍କ ଦେହ ପରି ।
ବଧ ମୋହ ଯୋଗୁଁ ଏହି,
ବଂଶେ କଳଙ୍କ ନ କରୁ ରାମଚନ୍ଦ୍ର ମୁହିଁ ।। ୨ ।।

ଚନ୍ଦ୍ରରେ କଳଙ୍କର କାରଣ —

ସମୁଦ୍ର ମନ୍ଥନରୁ ଚନ୍ଦ୍ର ନିଷ୍କଳଙ୍କ ହୋଇ ଜନ୍ମ ହୋଇଥିଲେ । ଥରେ ଗ୍ରୀଷ୍ମ ଋତୁରେ ଗୋଟିଏ ଶଶା ତୃଷାତୁର ହୋଇ ଜଳ ଅନ୍ୱେଷଣ କରୁଛି । ଏତିକିବେଳେ ଚନ୍ଦ୍ର ଉଦୟ ହେଲେ । ଚନ୍ଦ୍ରଙ୍କୁ ଜଳଭଣ୍ଡାର ମନେକରି ଶଶା ଦଉଡ଼ିଲା । ଦଉଡ଼ି ଦଉଡ଼ି ଶେଷରେ ତାର ପ୍ରାଣ ଚାଲିଗଲା । କିନ୍ତୁ ତାର ଆଶା ପୂର୍ଣ୍ଣ ହେଲନାହିଁ । ଯମଦୂତ ଶଶାର ପ୍ରାଣକୁ ନେଇ ଧର୍ମରାଜଙ୍କ ପାଖରେ ପହଞ୍ଚିଲେ । ଚିତ୍ରଗୁପ୍ତ ପାଞ୍ଜି ଦେଖି କହିଲେ, 'ଶଶାର ଆଉ ଏକ ବର୍ଷ ପରମାୟୁ ଅଛି । ଏ ତୃଷାରେ ହତଜ୍ଞାନ ହୋଇଛି ।' ଯମ ଆଦେଶ ଦେଲେ, 'ଏ ପ୍ରାଣ ନେଇ ଶୀଘ୍ର ତାର ପିଣ୍ଡରେ ରଖି ଆସ ।' ଦୂତମାନେ ଶଶାର ପ୍ରାଣ ଘେନି ଫେରି ଦେଖନ୍ତି, ପିଣ୍ଡଟିକୁ ଅନ୍ୟ କୌଣସି ପଶୁମାନେ ଖାଇ ଦେଇଛନ୍ତି । ସେମାନେ ନିରୁପାୟ ହୋଇ ଶଶାର ପ୍ରାଣ ଧରି ଯମରାଜ ନିକଟକୁ ଫେରିଗଲେ ।

ଯମରାଜା ଦୂତ ମୁଖରୁ ସମ୍ବାଦ ପାଇ ଶଶାକୁ କହିଲେ, 'ହେ ଶଶା, ତୁମ ପିଣ୍ଡଟି ଆମ ଭୁଲରେ ନଷ୍ଟ ହୋଇଯାଇଛି । ତୁମେ ଯାହା ଇଚ୍ଛାକରି ମାଗିବ ମୁଁ ଦେବାକୁ ପ୍ରସ୍ତୁତ ଅଛି । ଶଶା କହିଲା, 'ମୋର କୌଣସି କାମନା ନାହିଁ । ମାତ୍ର ମୋ ପିଣ୍ଡ ବ୍ୟତୀତ ମୁଁ ଅନ୍ୟଠାରେ ରହିବାକୁ ଚାହୁଁନାହିଁ ।' ଯମ ନିରୂପାୟ ହୋଇ ସମସ୍ତ ଦେବତାମାନଙ୍କୁ ଡକାଇ ସଭାକରି ଶଶାକୁ ଜଣାଇଲେ, 'ତୋ ପିଣ୍ଡଟି ନଷ୍ଟ ହୋଇ ଯାଇଛି । ଆମେ ତୋତେ ଚିରଦିନ ଅମରତ୍ୱ ଦେବୁ । ତୁ ଯେଉଁ ଚନ୍ଦ୍ରଙ୍କୁ ଜଳଜ୍ଞାନ କରି ମୃତ୍ୟୁବରଣ କରିଥିଲୁ ସେହି ଚନ୍ଦ୍ରଙ୍କ ଶରୀରରେ ସର୍ବଦା ବାସ କରିବୁ ।' ଶଶା ସମ୍ମତି ପ୍ରଦାନ କରିବାରୁ ପିତାମହ ବ୍ରହ୍ମାଙ୍କ ନିର୍ଦ୍ଦେଶ କ୍ରମେ ଚନ୍ଦ୍ର ଶଶାକୁ ଅଙ୍କରେ ଧାରଣ କଲେ । ଚନ୍ଦ୍ରଙ୍କର ବିମଳ ଶରୀର କଳଙ୍କିତ ହେଲା ।

— ଚନ୍ଦ୍ର ପୁରାଣ

୪-୪

[ ପ୍ରଥମ ଭାଗ ସମାପ୍ତ ]





ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟର ବିଦଗ୍ଧ ସମାଲୋଚକ, ପରିବେଷକ ଶ୍ରୀଯୁକ୍ତ ଶ୍ରୀଧର ପାଣ୍ଡଙ୍କର ଜନ୍ମ ଉଣେଇଶ ଏକତିରିଶି ମସିହା ଅକ୍ଟୋବର ଆଠ ତାରିଖରେ ବାଣ-ପୁରରେ । ପୁରାତନ କାବ୍ୟ ଗୁଡ଼ିକର ସହଜ ସରଳ ବ୍ୟାଖ୍ୟାନ, ବୈଦିକ ଚିନ୍ତାଧାରା, ଶାସ୍ତ୍ରୀୟ ବିଚାର ଓ ତାର ଭାଷାଗତ ଦଖଲ ଅତ୍ୟନ୍ତ ହୃଦ୍ୟ ଓ ମନୋଜ୍ଞ । ପୁରାତନ କାବ୍ୟ ଗୁଡ଼ିକର ଅନ୍ତର୍ନିହିତ ପୌରାଣିକ ଆଖ୍ୟାୟିକା ତଥା ବୈଶିଷ୍ଟ୍ୟ ପୂର୍ଣ୍ଣ ଭାବଗୁଡ଼ିକୁ ବିଦଗ୍ଧ ଜନସମାଜରେ ବିଶେଷ ଢ଼ଙ୍ଗରେ ପରିପ୍ରକାଶ କରି ଶ୍ରୋତାମାନଙ୍କୁ ବିମୁଗ୍ଧ କରିପାରନ୍ତି ସେ । ସେ ଜଣେ ଓଡ଼ିଆ ସାହିତ୍ୟର ସାଧକ, ସାହିତ୍ୟ ସେବୀ, ଜ୍ଞାନପିପାସୁ, ଗବେଷକ ମଧ୍ୟ ।

ଓଡିଶାର ପ୍ରବୀଣ ଓ ପ୍ରସିଦ୍ଧ ସାହିତ୍ୟ ସାଧକ ଶ୍ରୀଯୁକ୍ତ ଗୋପୀନାଥ ସେନାପତିଙ୍କର ଉପଦେଶ ଓ ଦିଗ୍‌ଦର୍ଶନ ଫଳରେ ଶ୍ରୀ ପାଣ୍ଡ ସାରା ଓଡିଶାରେ ଖ୍ୟାତି ଅର୍ଜ୍ଜନ କରି ପାରିଛନ୍ତି । ଜନପ୍ରିୟତା ହାସଲ କରିପାରିଛନ୍ତି । କବି ସେନାପତିଙ୍କ ସହ ଯୁଗ୍ମ ଲେଖକ ଭାବେ କେତେକ ପୁସ୍ତକ ରଚନା କରି ପାଲା ମଞ୍ଚରେ ପରିବେଷଣ କରିଛନ୍ତି । ସଂପ୍ରତି **ବୈଦେହୀଶ ବିଳାସର ପୁରାଣ ତତ୍ତ୍ୱ** ପୁସ୍ତକଟି ବୈଦେହୀଶ ବିଳାସର କେତେକ ଅନ୍ତର୍ନିହିତ ତତ୍ତ୍ୱ ଓ ତଥ୍ୟ ଉପରେ ଆଧାରିତ । ଏହାର ଦ୍ୱିତୀୟ ଭାଗ ପ୍ରକାଶ ଅପେକ୍ଷାରେ ।

–୦–